ଷ୍ଟୁଡେଣ୍ଟସ ଷ୍ଟୋର

ବ୍ରହ୍ମପୁର : କଟକ

ପ୍ରଥମ ପ୍ରକାଶ ୧୦୦୦

୧୯୮୭

ମୂଲ୍ୟ - ଦୁଇଟଙ୍କା ମାତ୍ର

## ପୁରୁଷ

| | |
|---|---|
| ଇନ୍ଦ୍ରନାଥ | କଂଗ୍ରେସ ନେତା |
| ଅପୂର୍ବ | ସ୍ୱାଧୀନ ଦଳର ନେତା |
| ନୀରକିଶୋର ବାବୁ | ମିଲ୍ ମାଲିକ |
| ଚନ୍ଦ୍ରନାଥ | ସନାତନୀ ପଣ୍ଡିତ |
| ବ୍ରହ୍ମଚରଣ | ଦେବାଳୟ ପୂଜାରୀ |
| କଲ୍ୟାଣ | ହରିଜନ |
| ଅର୍ଜୁନ, ଚରଣ, ଶିଖା | କଂଗ୍ରେସ କର୍ମୀଗଣ |
| ବିଦ୍ୟାଧର | ହରିଜନ |
| ଅରତ, ଶଙ୍କର | ସୁବିଧାବାଦଦଳର କର୍ମୀ |
| ପରାଶର | ହରିଜନ |

ସଭ୍ୟଗଣ, ହରିଜନଗଣ, ଶୋଭାଯାତ୍ରାକାରୀଗଣ,

## ସ୍ତ୍ରୀ

| | |
|---|---|
| ଅମିତା | ଅପୂର୍ବଙ୍କ ଭଉଣୀ |
| ଶାରଦା | ପୂଜାରୀଙ୍କ ସ୍ତ୍ରୀ |
| ଅପୂର୍ବଙ୍କ ମାଆ | ବୃଦ୍ଧା |

# ମନ୍ଦିର ପ୍ରବେଶ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

**ପରଦା ଅଗ୍ରେ ଆଗ୍ରେ ଉଠିବା; ରକ୍ତାକ୍ତ ହସ୍ତା ରକ୍ତାକ୍ତ ବସନା ଭାରତ ମାତାର ବ୍ୟାକୁଳ ବିଳାପ ।**

ଶୁଖାଇ ସଜଳ ଆଖିରେ,
ରହିଥିଲି ଗୃହେଁ ମୁକୁଳିତ ଆଶେ
ଯୁଗ ଯୁଗ ଧରି ସହୁଥିଲି ଶୋକ
କରିବାକୁ ମୁକ୍ତ ଆପଣା ଦେଶେ ।
ଫିଟାଉ ଫିଟାଉ ମୋ ହାତୁ ବନ୍ଧନ
ଯାହାଁକି ଜାଳିଲି ମୋ ହୃଦୟ ବନ
ସନ୍ତାନ ରକ୍ତିତ ବସନ ଅଞ୍ଚଳ ମୋର
ଦେଉଳରେ ପଶାନ୍ତି ସେଠେ
ଧୂ ଧୂ ହୋଇ ହିଂସାର ଅନଳ
ଜଳିଲା ଦେଶରେ ହୋଇଣି ପ୍ରବଳ

ସହସ୍ର ସହସ୍ର ସୁତ ସୁତା ମୋର
ମଲେ ସେ ହିଂସାର ଭୀଷଣ ବଳେ
ଧରମ ନାମରେ ଅଧରମ କରି
ଭାଇ ଗଲା ଭାଇ କାଟେ ଦେଇ ଛୁରୀ
କଳଙ୍କ କାଳିମା ବୋଳିଲ ମୁଖରେ
ହେୟ ହେବାକୁ ସମଗ୍ର ବିଶ୍ୱ ।
ମରଣରୁ ବଳି ପଡ଼ିଲା ଏ ଦୁଃଖ
କାହା ଆଗେ ଯାଇ ଦେଖାଇବି ମୁଖ
ଦୁର୍ବଳ ସୁତର ଦୁଃଖ ଦେଖି ମୋର
ଆଣିପାଏ ଛାତି ଦାରୁଣ ଶ୍ୱାସେ ।

ଭାରତ ମାତା—କଣ କରିବି, କାହିଁ ଯିବି, କାହାକୁ କହିବି, ଯହିଁ ଚାହିଁଲେ ଘରେ ଘରେ ବିବାଦ ! ରାଜ୍ୟ ପାଇବା ଆଗରୁ ସମସ୍ତେ କହୁଛନ୍ତି ମୁଁ ରାଜା ହେବି । ହାୟ ! କେଡ଼େ ଦଗ୍ଧ ହତଭାଗିନୀ ମୁଁ । ମୋର ଶିକ୍ଷା, ମୋର ଦୀକ୍ଷା, ମୋର ଅଭିଳାଷ, ମୋର ସନ୍ତାନଗଣ ଗ୍ରହଣ କରି ପାରୁ ନାହାନ୍ତି । ମୋର ଅଭିଳାଷ ପୂରଣ କରିବାକୁ ଉଦ୍‌ଯୋଗୀ ହେଉ ନାହାନ୍ତି । କିଏ କେଉଁଠାରେ ରହିଅଛ ବିଭୁ ! ଆସ ତ୍ୱରା, ଉତ୍କ୍ରାନ୍ତ ଦଶାରେ ପଡ଼ି ଯାଉଅଛୁ ଦେଶ ତବ ରସାତଳେ ଧୀରେ । ଶଙ୍ଖନାହିଁ ଆଜି ଧ୍ୱନି ଦେଇ ଅଛ କର୍ଣ୍ଣେ ରନ୍ଧ୍ର ମୁଦି ?

ସୁଭାଷ ଜୀ—(ବ୍ୟାକୁଳ ଭାବରେ) ମା ମା ନଥିଲ ଚେତନା, ବହୁକାଳରୁ ପରର ପ୍ରବଞ୍ଚନା ଦଳଲ ହୋଇଣ ପାଳିଲି, ନାଇଥିଲି ଭୁଲି ନିଜ ଜନନୀକୁ । କହୁଅଛି ଆଜି କରି ମୁଁ ପ୍ରତିଜ୍ଞା, ଯାହା ତୁ ଆଦେଶ ଦେବୁ କରିବି ମୁଁ ତାହା ।

ଦାମୁଲ—ଆପଣଙ୍କ ଲାଗୁ ସନ୍ତାନ ତୋହର ଅଟେ ଆଜ୍ଞାଧୀନ । କହ ମା
ଆଦେଶ କରିବ କି କାର୍ଯ୍ୟ ?

ନିଳକଣ୍ଠ—ପାଳନ ଅଭ୍ୟାସେ କରାଇଛ ଧାର୍ମିକ, ତଥାପି ମୁଁ ଭୁଲିନାହିଁ
ଜନନୀକୁ ମୋର । ଦିଅ ମା ଆଦେଶ କରିବ କି କାର୍ଯ୍ୟ ?

ଅର୍ଜ୍ଜୁନ—ଦିଅ ମା ଆଦେଶ । ଥିବାଯାଏ ଏ ଦେହରେ ଏକମାତ୍ର
ରକ୍ତବିନ୍ଦୁ, ପାଳିବି ମୁଁ ଆଦେଶ ତୋହର ।

ଭାରତମାତା—ଆଦେଶ ପୁତ୍ରମାନେ ରେ ବୀରଗଣ ମୋର । କହୁଅଛି
ଅଜି ବନ୍ଦୁ ଭାବେ, ବାଲ୍ୟାବସ୍ଥା ଗଲାଣି ତୁମର । ମୂର୍ଖ ଜନବନେ
ହୋଇ ଅନ୍ଧ; ପରସ୍ପରେ କରନାହିଁ ଭଲ । ଏକତା ପାଶରେ
ସର୍ବେ ହୋଇଣ ଅବଦ୍ଧ, ଏକମାତ୍ର ଈଶ୍ୱରଙ୍କୁ କର ସର୍ବେ
ପୂଜା । ହରିଜନ ନାମ ଦେଇ ଅସ୍ପୃଶ୍ୟ ସୁତଙ୍କୁ, ରଖିଅଛ ଅସ୍ପୃଶ୍ୟ
କରିଣ । ଆଜିଠାରୁ ସର୍ବେ ଏକମନେ ଅସ୍ପୃଶ୍ୟତା କର
ନିବାରଣ ।

ସମସ୍ତେ—ଆଜିଠାରୁ ଦେଶବାସୀ ହୋଇ ଏକ ମନ; ଅସ୍ପୃଶ୍ୟତା
କଳଙ୍କମୋଚନ କରିବା ନିମନ୍ତେ ହୋଉ ସାବଧାନ ।

[ ପରଦା ]

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—କୌଣସି ଏକ ପାନ୍ଥଶାଳା, ଶାମ୍ଭୁ ଓ ଇନ୍ଦ୍ରନାଥ

ଇନ୍ଦ୍ର—( ଚମକିଉଠି ) ବାଣୀ ଭାରତ ଜନନୀ ଚିରକାଳ ହୋଇ
କରିଛନ୍ତି ଦାସୀ । ଆଜି ଚତୁର୍ଦ୍ଦିଗରୁ ଶତ୍ରୁଙ୍କ ଭାଇଙ୍କ ଠାରେ
କାନ୍ଦୁଛି ଜାତିର ଧ୍ୱନି । ଆଜି ଭାରତମାତାର ଦାସତ୍ୱ ଅବସ୍ଥା
ଉନ୍ନତି ହୋଇ ପାରୁ । ତାହାଙ୍କ ଉନ୍ନତି ଦେଖି ଲୋକ କରି

ଦେଇଛି ରକ୍ତାକ୍ତ । [ ଦେଶଭ୍ରମଣ କରି ] କଣ କରିବି ମୁଁ !
ଦ୍ୱିଧାରେ ପଡ଼ି ମୁଁ ଯେ ଦାରୁଣ ଦୁଃଖ ଭୋଗ କରୁଛି ।

ଅର୍ଜ୍ଜୁନ—( ପ୍ରବେଶ ) ନମସ୍କାର ଅଜ୍ଞା !

ଇନ୍ଦ୍ର—ଆସ ଅର୍ଜୁନ ଆସ, ଖବର କଣ କହ ।

ଅର୍ଜ୍ଜୁନ—ଖବର ଆଉ କଣ କହିବ । ଲୋକେ କହୁଛନ୍ତି ଲୋକ-ପ୍ରିୟ ସରକାର ଗଠନ ହେଲେ, ଆମର କାମ ହେଲା । ଜମିଦାରୀ ପ୍ରଥା ତ ଉଠିଲା ନାହିଁ । ହରିଜନ ତ ଅଛୁଆଁ ହୋଇ ରହିଲେ । ଦେଶର କଳକାରଖାନା ତ ଜାତୀୟ ସମ୍ପଦ ନ ହୋଇ ଧନୀମାନଙ୍କର ମୁଠା ଭିତରେ ରହିଛି । ଅଶାନ୍ତି ଛଡ଼ା ଶାନ୍ତି ତ କେଉଁଠି ନାହିଁ ।

ଇନ୍ଦ୍ର—ଜାଣ ଅର୍ଜୁନ ! ଦୀର୍ଘ ତେରବର୍ଷ ଜେଲରେ ରହି ମନେ ପଡ଼ୁଥିଲା—ସହକର୍ମୀମାନଙ୍କର ସ୍ନେହ ସହାନୁଭୂତି, ଆଉ ସେଥିସଙ୍ଗେ ଆଖି ଆଗରେ ଫୁଟି ଉଠୁଥିଲା ଉତ୍କଳ ଭୂମିର ଶୁଭ୍ର ଶୋଭା । ମନେ ପଡୁଥାଏ କବିଶେଖର ଚିନ୍ତାମଣିଙ୍କ ଉକ୍ତି—"ଭାରତରେ ଉତ୍କଳ ଅଟଇ ଅତୁଳ, ଗ୍ରାମ ମଧ୍ୟେ ପାରିଜାତ ଫୁଲ ।" ମୁଁ ପୁଣି ସେହି ପାରିଜାତ ଉପବନକୁ ଆଜି ଫେରି ଆସିଛି । ମନରେ ଜାଗି ଉଠିଛି ଅପରନ୍ତ ଆନନ୍ଦ । ବ୍ୟସ୍ତ ହୋଇ ଅଜି ଚିନ୍ତା କରୁଛି ଦୀର୍ଘ ତିନିବର୍ଷ ଭିତରେ ବଡ ବଡ ନେତାଙ୍କ ସହିତ ବସି ବସି, ଦେଶର ହିତ ସମ୍ବନ୍ଧରେ ନାନା ତର୍କ କରି, ନିଜକୁ ସେହି ଅତି ବଡ ଭାରତୀୟ ଭାବ ସ୍ରୋତରେ ଭସେଇ ଦେଇ ପାରି ନାହିଁ । ମୋର ଜନ୍ମଭୂମିର କ୍ଷୁଦ୍ର ପରିସର ନିମନ୍ତେ ଆକୁଳ ହୋଇ ଉଠୁଛି ଅନେକ ସମୟରେ । ଭଗବାନ କେବେ ସୁଯୋଗ ଦେବେ ଦେଶବାସୀଙ୍କ ନିମନ୍ତେ କିଛି କରିବି ବୋଲି ଚିନ୍ତା କରୁଛି ନିରନ୍ତର ।

ଚରଣ—(ପ୍ରବେଶ) ନମସ୍କାର ଅଜ୍ଞା ।

ଇନ୍ଦ୍ର—ଆସିଲ ବସ, ଅର୍ଜୁନ !

ଅର୍ଜୁନ—ଅଜ୍ଞା !

ଇନ୍ଦ୍ର—ଶୁଣୁଛି—

ଚରଣ—କଣ ଆଉ ଶୁଣୁଛନ୍ତି । ଲୋକେ କହୁଛନ୍ତି ଦେଶପାଇଁ ଯଦି କିଛି କରି ନ ପାରଲେ ସଭ୍ୟ ପଦ ଛାଡ଼ି ଦିଅନ୍ତୁ—

ଇନ୍ଦ୍ର—[ ପଦଗ୍ରହଣ କରି ] ସଭ୍ୟପଦ ଛାଡ଼ି ଦେବାକୁ ହେବ । ଛାଡ଼ିଦେବା ଉଚିତ । ଯଦି କିଛି କରି ନ ପାରିଲ ତେବେ ଛାଡ଼ିଦେବା ଉଚିତ ।

ଅର୍ଜୁନ—ଯେଉଁ ଲୋକ ବର୍ତ୍ତମାନ କିଛି କଲେ ନାହିଁ ବୋଲି ବାହାରେ ବସି ଚିତ୍କାର କରୁଛନ୍ତି, ସେମାନେ ଯଦି ସେହି ଆସନରେ ଯାଇ ବସନ୍ତେ, ତେବେ ବୁଝି ପାରନ୍ତେ କାର୍ଯ୍ୟ କରିବା କେତେ କଷ୍ଟ ସାଧ୍ୟ । କହିଲେ କେହି ବିଶ୍ୱାସ କରିବ ନାହିଁ, ଧଳାପୁର ଗାଁର ରାସ୍ତାଟା ଅତି ଖରାପ ହୋଇ ପଡ଼ିଥିଲା । ତାକୁ ତିଆରି କରିବା ନିମନ୍ତେ ବୋର୍ଡ଼ରୁ ଟଙ୍କା ମଞ୍ଜୁର ହେଲା । ଗାଁ ଲୋକେ କହିଲେ, "ଆମେ ଏସ ଭାର ନେଇ ପାରିବୁ ନାହିଁ, ସରକାର କରନ୍ତୁ ।" ମୁଁ ସେ ଭାର ନେଇ କାର୍ଯ୍ୟ ଆରମ୍ଭ କଲି । କାମ ସବୁ ସାଙ୍ଗ ହେଲା ରାସ୍ତା ତିଆରି କରେଇ, ପରେ ଶୁଣିଲି, ଲୋକେ କହିଲେ, "ଅର୍ଜୁନ ସେଥିରୁ ଅନେକ ଟଙ୍କା ଆତ୍ମସାତ୍ କରି ବସିଲେ ।" ଇମିତ ଜଘନ୍ୟ ଏ ଲୋକଙ୍କ ବିଚାର ।

ଇନ୍ଦ୍ର—( ଉତ୍ତେଜିତ ଭାବରେ ) ଲୋକଙ୍କୁ ଦୋଷ ଦେବା ଆମର ମୌର୍ଖ୍ୟ ବୁଝିଲ ଅର୍ଜୁନ, କୁଆଷା ଯୋଗୁଁ ଲୋକେ ଯାହା ଇଚ୍ଛା କହି ଯାଉଛନ୍ତି । ସେଥିରେ ତାଙ୍କର ଦୋଷ ନାହିଁ ।

ନରେଶ—ଶିକ୍ଷିତ ଲୋକ ତ ମୋଟେଁ ଦଳ କାମ କରି ପକାଅନ୍ତି; ମୁଁ ତ କହୁଛି ଶିକ୍ଷିତ ଅଶିକ୍ଷିତ ସମସ୍ତେ ସମାନ ।

ଇନ୍ଦ୍ର—ସ୍ୱଭାବ ନେଇ ଦଳମଧ୍ୟ ଲୋକର ବିକାଶ ହୁଏ ଅର୍ଜ୍ଜୁନ । ଏପରି ଦଳ ଗଢ଼ ବାନ୍ଧିବା ଆମର ସମ୍ଭବ ନାହିଁ । ଦଳ ନେତ୍ରୀ କର ଦଳ କାର୍ଯ୍ୟ କରିବାକୁ ଯାଅ ଯାଅ ଭଗବାନ ଯାହା କରିବେ । ସେ କାର୍ଯ୍ୟ କରେ ସେ ଯିବା ସତେ, ଏ ଚାଲ ସୃଷ୍ଟିର ନିୟମ ।

ଶିରିଶ—( ପ୍ରବେଶ ) ଅଜ୍ଞା ! ଅର୍ଜ୍ଜୁନ ବାବୁ କହିଲେ, "ସେ ଆପଣଙ୍କ ଗୁରୁବାକ୍ୟ ଶୁଣିବେ ନାହିଁ ।"

ଇନ୍ଦ୍ର—ଅର୍ଜ୍ଜୁନ ଏ କଥା ମତେ କହିଲା ! ଅର୍ଜ୍ଜୁନ ମୋର ସ୍ନେହ, ତୋମାର ଶ୍ରଦ୍ଧା, ମୋର ଆନ୍ତରିକତା ଭୁଲିଗଲା ?

ଶିରିଶ—କହିଲେ, ଆମେ କୌଣସି ନେତାଙ୍କର ଉତ୍କୃଷ୍ଟ ନୀତିର ଅନୁବର୍ତ୍ତୀ ହୋଇ ପାରିବୁ ନାହିଁ । ଆମେ ସ୍ୱାଧୀନ ହେବୁ । ସ୍ୱାଧୀନତାହିଁ ଆମର ଲକ୍ଷ୍ୟ ହେବ ।

ଇନ୍ଦ୍ର—ଅର୍ଜ୍ଜୁନ ଭୁଲ କହୁଛି ଶିରିଶ । ଅର୍ଜ୍ଜୁନ ଭୁଲ କରୁଛି । ଜଗତରେ ସୃଷ୍ଟିରେ କେବେ କୌଣସି ଲୋକ ସ୍ୱାଧୀନ ନୁହେ । କିଏ କର୍ମର ଅଧୀନ, କିଏ ହୁଏ ତ ବ୍ୟକ୍ତିର ଅଧୀନ । ସ୍ୱାଧୀନ କେହି ନୁହେ ।

ଅର୍ଜ୍ଜୁନ—( ହଠାତ୍ ପ୍ରବେଶ କରି ) କିନ୍ତୁ ସ୍ୱାଧୀନ ହୋଇପାରେ । କାହିଁକି କେହି ସ୍ୱାଧୀନ ନ ହେବ । ବର୍ତ୍ତମାନ ମୁଁ ସେହି କଳ୍ପନାରେହିଁ ଗଢୁଛି ସ୍ୱାଧୀନ ଦଳ ।

ଇନ୍ଦ୍ର—(ଟିକେ ହସି ) ତୁମେ ଗଢ଼ୁଛ ସ୍ୱାଧୀନ ଦଳ ! ସେ ଦଳର ନେତା ହେବ ତୁମେ ନିଜେ ! ଦଳ ହେବ ତୁମର ଅଧୀନ । ତେବେ ଅନ୍ୟମାନଙ୍କର ସ୍ୱାଧୀନତା କେଉଁଠି ରହିଲା ଅର୍ଜ୍ଜୁନ ?

ଅପୂର୍ଣ୍ଣ—ତୁମର କପଟ ମଧୁର ବଚନ ଶୁଣି ଶୁଣି ମୋର ଅଭ୍ୟାସ ହୋଇ ଗଲାଣି ଇନ୍ଦ୍ରନାଥ । ଯେଉଁ ଦିନ ତୁମେ କହିଲ, ଜନତା ତୁମକୁ ଚାହୁଁ ନାହାନ୍ତି, ଚାହୁଁଛନ୍ତି ମତେ, କିନ୍ତୁ ମୁଁ ଜାଣେ ଜନତା ଚାହୁଁ ଥିଲେ ମତେ । ତୁମକୁ ଚାହୁଁ ଥିଲେ ତୁମପରି କେତେ ଜଣ ମୁଷ୍ଟିମେୟ ନେତା ମାତ୍ର । ସେଥିପାଇଁ ଜନତା ଆଡ଼କୁ ଦୃଷ୍ଟି ଦେବାକୁ ତୁମର ଅବସର ନାହିଁ ।

ଇନ୍ଦ୍ର—ମୋ ଭଳି କେତେଜଣ ନେତା ତୁମକୁ ମଧ ବାଞ୍ଛୁଥାନ୍ତେ, ଅପୂର୍ଣ୍ଣ । ଆଉ ତୁମେ ଏଇ ଆସନରେ ବସି ଥିଲେ ମୋଠୁ ବେଶୀ କିଛି କରି ପାରିଥାନ୍ତ ଏ ଧାରଣା ତୁମେ କର ନାହିଁ ଅପୂର୍ଣ୍ଣ ।

ଅପୂର୍ଣ୍ଣ—ଅଚ୍ଛା, ମତେ ନ ବାଞ୍ଛିବା କାରଣ କଣ କହିଲ ଆଗେ ।

ଇନ୍ଦ୍ର—ନ ବାଞ୍ଛିବା କାରଣ ମୋଠୁ ବୋଧହୁଏ ତୁମେ ହିଁ ଜାଣ ଖୁବ୍ ବେଶୀ । ଆଜି ମୋର ମନେ ପଡ଼ୁଛି—ନା ! ସେ ସବୁ କହିବା ଦରକାର ନାହିଁ । କିନ୍ତୁ ଅପୂର୍ଣ୍ଣ, ଥରେ ଦୂରଦୃଷ୍ଟି ଦେଇ ଚିନ୍ତା କରି ଦେଖ, ତୁମେ କି ଭୁଲ କରିଛ—ନିଜର ଅନାବଶ୍ୟକ ଚରିତ୍ର ମଳିତ୍ୱରେ ଦୋଇ ।

ଅପୂର୍ଣ୍ଣ—ହଁ, ନିଜର ଅନାବଶ୍ୟକ ଚରିତ୍ର ମଳିନତ୍ୱ ଦୋଇ, ସୁଦ୍ଧ-ବେଳେ ହଜାର ହଜାର ନିରାଶ୍ରୟା ନାରୀଙ୍କ ନିମନ୍ତେ ଆହାରର ବ୍ୟବସ୍ଥା କରି ଦେଇଛି, ଏବଂ ସେଇଥିଲା ମୋର ଭୁଲ ।

ଇନ୍ଦ୍ର—ଜର୍ମନୀର ବମ୍ବାଳମାନେ ପରେ, କଂଗ୍ରେସର ବିଦ୍ରୋହ ଅବଶ୍ୟମ୍ଭାବୀ ମନେ କରି ଯେଉଁ ସମୟରେ, ଭାରତ ସରକାର ଭାରତ ଆକାଶକୁ ଅନ୍ଧକାରମୟ କରି ଦେଇ ଭାରତର ରାଜ୍ୟ ଏବଂ ପ୍ରିୟତମ ନେତାମାନଙ୍କୁ ନିର୍ଜ୍ଜନ ଦ୍ୱୀପରେ ନିର୍ବାସନ ଦଣ୍ଡ ଦେଉ ଥିଲେ, ସେହି ସମୟରେ ତୁମେ ବୃଟିଶ ଶାସନ ସହିତ ସମ୍ପୂର୍ଣ୍ଣ ସହଯୋଗ କରି, ଶୋଷିତ ଜନ ସାଧାରଣଙ୍କଠାରୁ

ଯେଉଁ ଭାବରେ ଗୁହା ଅଧିକାର କରିଛ, ଯେଉଁ ଭାବରେ ଏ ଦେଶର ଅନ୍ଧଜନତାଙ୍କୁ, ଅନ୍ଧାରରେ ଲୋଭ ଦେଖାଇ ବର୍ମା, ମାଳୟ, ସିଙ୍ଗାପୁର ସମର କ୍ଷେତ୍ରର ତୋପ ମୁହଁରେ ଠିଆ କରେଇ ଦେଇଛ, ତା ବଦଳରେ ତୁମେ ପାଇଛ କଣ ? ପାଇଛ ଲଜ୍ଜା, କୁଶିକ୍ଷା, କୁଅଭ୍ୟାସ, ଆଉ ସାମାନ୍ୟ ତୁଚ୍ଛ ଅର୍ଥ ମାନ । ଗର୍ବ କରି କହିବାକୁ ତୁମଠାରେ କୌଣସି ପଦାର୍ଥ ନାହିଁ ଅନୂଢ଼ି ।

ଅନୂଢ଼ି—( ବ୍ୟଙ୍ଗ ହସି ) ଠିକ୍ ବଗଡ଼ ବୈଷ୍ଣବ ପରି ତୁମର କଥା ଲୁଗକ ସ୍ପଷ୍ଟ ଇନ୍ଦ୍ରନାଥ । ଯେହେତୁ ତୁମେ ସେଇ ସାମାନ୍ୟ ତୁଚ୍ଛ ଅର୍ଥ ଲୋଭରେ ଅଳ୍ପ ବ୍ୟବସ୍ଥାତ୍ମକ ଭାବରେ ବସିବାକୁ ଲୋଭୀପର ଦୌଡ଼ ଯାଇଛ । ସେଥିପାଇଁ ଗର୍ବରେ ଆଜି ତୁମର ହୃତ୍‌ପିଣ୍ଡ ଜଳୁଛି ଜଳିଛି । ବ୍ରିଟିଶ ସରକାର ତୁମ ହାତକୁ ସାମାନ୍ୟ ଅଧିକାର ଦେବାକୁ ବଳ ହୋଇଥାଇନ୍ତି । ବର୍ତ୍ତମାନ ତୁମେ ସେହି କ୍ଷମତା ମଦରେ ଅନ୍ଧ ହୋଇ ବସିଛ । ଅତ୍ୟାଚାରର ପୀଡ଼ିତ ଜନତା ଆଡ଼କୁ ଦୃଷ୍ଟି ଦେବାକୁ ତୁମର ଅବସର ନାହିଁ । କିନ୍ତୁ ମନେ ରଖ କ୍ଷମତା ମିଥ୍ୟା ଇନ୍ଦ୍ରନାଥ, ଚିରକାଳ କୌଣସି କଥା ସମାନ ଭାବରେ ରହେ ନାହିଁ । ନିଜ ନିଜ ସ୍ୱାର୍ଥ ଆଶାରେ ଆଜି ଯେଉଁମାନେ ତୁମର ପ୍ରଶଂସା ଅଜସ୍ର ଭାବରେ ଗାଇ ଯାଉଛନ୍ତି, କାଲି କୌଣସି ଘଟଣାରେ ବଶ ହୋଇ ତୁମକୁ ଆସନ ବିଚ୍ୟୁତ କରିବାକୁ ପ୍ରାଣାନ୍ତ ଚେଷ୍ଟା କରି ପାରନ୍ତି । ଆଜି ମୁଁ ଦୃଢ଼ତାର ସହିତ କହିପାରେ, ଏହି ପୀଡ଼ିତ ଅବହେଳିତ କୃଷୀ ସମ୍ପ୍ରଦାୟକୁ ତୁମେ ଯେଉଁ ଭାବରେ ଫାଙ୍କି ଦେଇ ଆସୁଛ, ସେମାନେ ତୁମକୁ ଆଉ କୌଣସି କାଳେ ବିଶ୍ୱାସ କରିବେ ନାହିଁ । ଆଉ ତୁମେ ମଧ୍ୟ କୌଣସି ମତେ ସେମାନଙ୍କର ସମ୍ମୁଖୀନ ହୋଇ ପାରିବ ନାହିଁ ।

ଇନ୍ଦ୍ର—( କରୁଣ ହାସ୍ୟକରି ) ମୋର ତ କୌଣସି ସ୍ୱତନ୍ତ୍ରତା ନାହିଁ ଅପୂର୍ଣ୍ଣ ? ସେମାନଙ୍କର ସମ୍ମୁଖୀନ ହେବାର ମୋର କୌଣସି ଆବଶ୍ୟକତା ନାହିଁ । ଯେଉଁ କଂଗ୍ରେସ ପଚାଶ ବର୍ଷ ଅଗରୁ ଗୃହୀ ମୂଳଅଙ୍କର ଅସ୍ତିତ୍ୱ ଘୋଷଣା କରିଛି, ଯେଉଁ କଂଗ୍ରେସ ପୁଞ୍ଜିବାଦକୁ, ସାମ୍ରାଜ୍ୟବାଦକୁ, ଧନ ବାଦକୁ ଧ୍ୱଂସ କରିବା ନିମନ୍ତେ ପଚାଶ ବର୍ଷ ହେଲା ବାଗ୍ବଳତ ପ୍ରକାଶ କରି ବ୍ରିଟିଶ ସିଂହକୁ ବିଚଳିତ କରି ପୃଥିବୀ ଆଗରେ ଚମତ୍କୃତ ପ୍ରସ୍ତାବମାନ କରି ଆସିଛି, ସେହି କଂଗ୍ରେସର ପବିତ୍ର କଳ୍ପନା କୌଣସି କାଳେ ବ୍ୟର୍ଥ ହେବ ନାହିଁ ଅପୂର୍ଣ୍ଣ ହୁଏ ତ ଅଳ୍ପ କେତେକ ଜ୍ଞାନଜ୍ଞାନ ଶୂନ୍ୟ ଜନତା, କୌଣସି ପ୍ରକାର ସ୍ୱାର୍ଥର ଆକର୍ଷଣରେ, କଂଗ୍ରେସ ବିରୋଧୀଦଳ ଗଢ଼ି ପାରନ୍ତି । କିନ୍ତୁ ଦୁଇଦିନ ପରେ ସେମାନେ ନିଜ ନିଜ ଭ୍ରମ ବୁଝିପାରି ପୁଣି ସେଇ କଂଗ୍ରେସର ମହିମାମୟ ଆଶ୍ରୟରେ ଅବସ୍ଥାନ କରିବାକୁ ଟିକେ ମାତ୍ର କୁଣ୍ଠିତ ହେବେ ନାହିଁ ।

ଅପୂର୍ଣ୍ଣ—ତୁମର ଏ ବାଚାଳିକ ବୈଭବ ରହିବ ନାହିଁ ଇନ୍ଦ୍ର-ନାଥ, ଲୋକ ଏଥିଣି ଆଉ ଅବୁଝା ହୋଇ ରହି ନାହାନ୍ତି ।

ଇନ୍ଦ୍ର—ବଡ଼ ସୁଖର କଥା ଅପୂର୍ଣ୍ଣ । ମୋ ଦେଶର ଲୋକ ମୋ ଦେଶର ପ୍ରକୃତ ଅବସ୍ଥା ଜାଣିବାକୁ ଚେଷ୍ଟା କଲେଣି । ମୋର ବିଶ୍ୱାସ ଏଇ ଜାଣିବା ଶକ୍ତିଟା ଦେଇଛି ସେଇ କଂଗ୍ରେସ । ଶୁଣ ଅପୂର୍ଣ୍ଣ, ବର୍ତ୍ତମାନର ପରିସ୍ଥିତିରେ ତୁମେ ସେଇ ଅଗ କଥା ଭୁଲି ଚାଲିଆସ । ମୋ ସହିତ ସହଯୋଗ କର । ଦୁହିଁଙ୍କର ପନ୍ଥା ଏକ ହେଉ, ଜନସେବା ଆମ ଦୁହିଁଙ୍କର ଲକ୍ଷ୍ୟ ହେଉ । ଆମର ମନୁଷ୍ୟ ଜୀବନ ସାର୍ଥକ ହେଉ ।

ଅପୂର୍ଣ୍ଣ—ତୁମେ ନିଜେ ସାର୍ଥକ ହୋଇପାର, ପରେ ଅନ୍ୟଙ୍କୁ ସାର୍ଥକ କରିବ । ( ପ୍ରସ୍ଥାନ )

ଅର୍ଜୁନ—ମୁଁ କହୁଥିଲି ପରା ଅଜ୍ଞ ! ଗୋଟାପାକ ତାଲୁକାର ଲୋକ ତାଙ୍କ ଅଧୀନରେ ରହୁଲେଣି । ଲୋକେ ତ ଉଦରର ଅଜ୍ଞା ବନ୍ଧା । ଯେଉଁଠୁ ପେଟପୂରା କରି ପାଇଲେ ସେଇଠି କାମକଲେ ।

ଅପୂର୍ଣ୍ଣ—( ପୁନଃ ପ୍ରବେଶ କରି ) ଇନ୍ଦ୍ରନାଥ, ମୁଁ ଆଜି ତୁମ ପାଖରେ ହେଲି ଦୋଷୀ । ଯେହେତୁ ଯୁଦ୍ଧାତଙ୍କ ପୀଡ଼ିତ ହଜାର ହଜାର ଅସହାୟ ଜନତାକୁ ଯୋଗେଇ ଦେଇଥିଲି କାର୍ଯ୍ୟ । ଯାହାର ସହାନୁଭୂତିରେ ସେମାନେ ମୁଠେ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ ପାଇଥିଲେ । କିନ୍ତୁ ଆଜି ଯେଉଁମାନେ ଯୁଦ୍ଧବେଳେ ନାନା ଭାବରେ ସରକାରଙ୍କୁ ସାହାଯ୍ୟ କରି ଲାଭବାନ୍ ହୋଇଛନ୍ତି, ଯେଉଁମାନେ କଂଗ୍ରେସ ବିରୋଧ କାର୍ଯ୍ୟ କରି ଲକ୍ଷ ଲକ୍ଷ ମହଣ ଧାନ କଳା ବଜାରରେ ବିକ୍ରି କରି ଧନ ଗର୍ବରେ ଉନ୍ମତ୍ତ ହୋଇ ବସିଛନ୍ତି, ସେମାନଙ୍କୁ ତୁମେ ଗ୍ରହଣ କରିଛ, କଂଗ୍ରେସର ସଚ୍ଚା କର୍ମୀ ବୋଲି, ଯେଉଁମାନେ ଯୁଦ୍ଧବେଳେ ସଙ୍ଗୀତ ପ୍ରଚାର କରି ବ୍ରିଟିଶ ରାଜତ୍ୱର ଜୟଗାନ କରି, ହଜାର ହଜାର ଟଙ୍କା ଯୁଦ୍ଧଚାନ୍ଦା ଅଦାୟ କରି, ଯୁଦ୍ଧର ସହାୟତା କରୁଥିଲେ, ସେହିମାନେ ହୋଇଛନ୍ତି ତୁମର ପ୍ରିୟ ବନ୍ଧୁ ବା ନେତୃସ୍ଥାନୀୟ ଲୋକ । ଆଉ ଯେଉଁ ଅପୂର୍ଣ୍ଣ ନ ଖାଇ ପେଟ ଜାଳୁଛି, ନ ଶୋଇ ପିଠି ଫଟେଇଛି, ଗୃହ ଗୃହ ପାଦର ଚମ କ୍ଷୟ କରିଛି, କଥା କହି କହି ତୋଟି ଫୁଲେଇଛି, ତାକୁ ତୁମେ ସୁଯୋଗ ଦେଖି କରି ଦେଇଛ ଅନ୍ତର । ଅପୂର୍ଣ୍ଣ କିନ୍ତୁ ତୁମମାନଙ୍କୁ ସହଜରେ ଅବ୍ୟାହତି ଦେବ ନାହିଁ । ସେ ତୁମମାନଙ୍କୁ ଜଳେଇବ, ପୋଡ଼େଇବ, ଅପମାନ ଦେବ, ଲୋକରେ ହେୟ କରିବ, ତେବେ ଯାଇ ତାର ମନସ୍କାମନା ପୂର୍ଣ୍ଣ ହେବ ।

ଇନ୍ଦ୍ର—( ଶାନ୍ତ ସହଜ ଭାବରେ ) ଅପୂର୍ଣ୍ଣ ! ତୁମେ ଭଲ ଥାଇଲାର ଦଶ ଦେଖାଇ ମତେ ଗାଳି ଦେଉଛ । କିନ୍ତୁ ମୁଁ ତୁମକୁ କହୁଛି । ଜନତା ଆଗରେ ଅଦେଖିଲାର ଧାନ କରାଇ ତୁମର ମନସ୍କାମନା ପୂର୍ଣ୍ଣ ହେବ ନାହିଁ । ପୂର୍ଣ୍ଣ ହେବ ତୁମ ଦେଶର ଚାଳିଶି କୋଟି ଜନତା ଯେତେବେଳେ ସମସ୍ୱରରେ କହିବେ 'ଜୟ ଭାରତର ଜୟ ।'

ଅପୂର୍ଣ୍ଣ—( ବ୍ୟଙ୍ଗହସି ) ହଁ ହଁ । ତୁମେ ଅତି ସୁଖରେ ଅଧିକାର ଆସନରେ ବସି, ଉପାଦେୟ ଆହାର ଖାଇ, ପତଳା ପଞ୍ଜାବି ଖଦଡ଼ ପିନ୍ଧିବ, ଖବର କାଗଜରେ ଗୋଟାଏ ଗୋଟାଏ ଲମ୍ବା ବକ୍ତୃତା ଦେଇଦେଲେ ଏ—ଦେଶର ଚାଳିଶି କୋଟି ଲୋକ ଏକାଠି ହୋଇଯିବେ, ଆଉ ଜଣେ କି ? ତୁମର ବାଚନିକ ବୈଭବ ତୁମର ସେଇ ଖୋସାମୋଦିଆ ଦଳ ଆଗରେ ବଖାଣି ଦେବ ଯାଅ ଇନ୍ଦ୍ରନାଥ । ଏଣେ ହଜାର ହଜାର ଦୀନ ହୀନ ଦେଶ-ବାସୀ ମୂର୍ଖ ହୋଇ, ପଣ୍ଡିତଠାରୁ ହୀନ ହୋଇ, ହରିଜନ ନାମରେ, ଶୂଦ୍ର ନାମରେ, ଦୁଃଖୀ ନାମରେ, ଅସ୍ପୃଶ୍ୟ ନାମରେ, ଅଶିକ୍ଷିତ ନାମରେ ଚିରକାଳ ମଡ଼ା ରହିଥାନ୍ତୁ । ( ପ୍ରସ୍ଥାନ )

ଇନ୍ଦ୍ର—ଅର୍ଜୁନ ! ଅପୂର୍ଣ୍ଣ ମତେ ବହୁତ ନୂଆ ଏ କଡ଼ାକଥା ଶୁଣାଇ ଦେଇଗଲା । ମୋର ସେଥିରେ ଦୁଃଖ ନାହିଁ । ମୁଁ ଚାହେଁ ଦେଶର କିଛି କାର୍ଯ୍ୟ କରିବାକୁ ! ବର୍ତ୍ତମାନ ଆମର ପ୍ରଧାନ ଏବଂ ପ୍ରଥମ କାର୍ଯ୍ୟ ହରିଜନମାନଙ୍କୁ ମନ୍ଦିର ପ୍ରବେଶ କରାଇବା । ତୁମେ ତିନିହେଁ ଯାଇ ଏ ଅଞ୍ଚଳର ଯେତେ ଗାଁରେ ମନ୍ଦିର ଅଛି, ସବୁ ସ୍ଥାନରେ ପ୍ରଚାର କରିଦେଇ ଆସିବ । କାଲି ପ୍ରଥମ ଏଇ ସ୍ଥାନରେ ମନ୍ଦିର ପ୍ରବେଶ କାମ ଆରମ୍ଭ ହେବ । ବୁଝିଲ, ଯାଅ ।

ସମସ୍ତେ—ଯାଉଛୁ । ନମସ୍କାର ।

ଇନ୍ଦ୍ର—ପ୍ରତ୍ୟେକ ସ୍ଥାନରେ ସଭା ଆୟୋଜନ କରି ମୋ ପାଖକୁ ଆସିବ ।

ଅର୍ଜୁନ—ଆଜ ପ୍ରଥମେ ଏଇଠି ସଭାଟ' ହୋଇଯାଉ । ଆମେ ଯାଉଛୁ ହରିଜନ ସାହିକୁ । ଫୁଲ ଚରଣ, ଚାଲନ୍ତୁ ଗିରିଶ ବାବୁ ।

( ପ୍ରସ୍ଥାନ )

ଇନ୍ଦ୍ର—(ପଦଚାରଣକରି) ବର୍ତ୍ତମାନ ଦେଶର ଏହି ଭୀଷଣ ପରିସ୍ଥିତି । ବଙ୍ଗର ବିଭୀଷିକାମୟ ସାମ୍ପ୍ରଦାୟିକ ଗଣ୍ଡଗୋଳ । ଗୁଣ୍ଡାଙ୍କ ହତ୍ୟା ମନୋଭାବର ଫଳରେ ହଜାର ହଜାର ଲୋକଙ୍କ ମୃତ୍ୟୁ । ନୁଆଖାଲିରେ ମହାତ୍ମା ଗାନ୍ଧିଙ୍କ ଅବସ୍ଥାନ, ତତ୍ସଙ୍ଗେ ତାହାଙ୍କର ପଦବ୍ରଜ ଯାତ୍ରା, ମୋର କଠୋର ହୃଦୟକୁ ମଧ୍ୟ ମଥିତ କରି ଦେଉଛି । ଅଜାଣତରେ ଆଖି ହୋଇଯାଉଛି ଆର୍ଦ୍ର ।

ଆଉ ନିରଶାର ଭୀଷଣ କ୍ରୀଡ଼ା ଚାଲିଛି ସାରା ଭାରତରେ । ବ୍ରିଟିଶ ସରକାରଙ୍କ ଭାରତ ତ୍ୟାଗ ପ୍ରତିଶ୍ରୁତି ପ୍ରଦାନ, ଏବେଣି ଲୀଗ୍ ନେତାଙ୍କ ରାଜ୍ୟ ଧ୍ୱଂସକାରୀ ଭେଦନୀତି, ବଙ୍ଗ ବିହାର ଘାଣକାଟ ସଙ୍ଗେ ସଙ୍ଗେ, ପଞ୍ଜାବ, ବମ୍ବେ ପ୍ରଭୃତି ସ୍ଥାନମାନଙ୍କର ସାମ୍ପ୍ରଦାୟିକ ହତ୍ୟାକାଣ୍ଡ । ରାଜା ମହାରାଜାମାନଙ୍କ ବ୍ରିଟିଶ ଆଶ୍ରୟ ଅବଲମ୍ବନ ନୀତି, ତଥାକଥିତ ଶିକ୍ଷିତ ସମାଜଙ୍କ ସୁବିଧାବାଦରୂପ ନୀଚ ମନୋଭାବ, ଜନସାଧାରଣଙ୍କ ଦାୟିତ୍ୱହୀନତା, ଗୋଷ୍ଠୀଗତ ବିଦ୍ୱେଷ ଇତ୍ୟାଦି ଚିନ୍ତା କରି ଅନ୍ତର ରାଜ୍ୟ ପ୍ରବଳ ବେଗରେ ଆଲୋଡ଼ିତ ହୋଇ ଉଠୁଛି ।

ଧୀର—(ପ୍ରବେଶ) ନମସ୍କାର ଆଜ୍ଞା, ସବୁ ଭଲ ତ ?

ଇନ୍ଦ୍ର—ନମସ୍କାର, ବସନ୍ତୁ । ଆପଣଙ୍କର ଟନିକଲଣ୍ଟା ବର୍ତ୍ତମାନ ଚାଲୁଛି ତ ?

ବୀର—ଚାଲୁଛି । କିନ୍ତୁ ପର୍ମିଟ ଗୁଡ଼ାକ ବାରମ୍ବାର ଚାଲିଛି । ଧନୀମାନଙ୍କ ଉପରେ ବିଦ୍ରୋହ ଚାଲିଛି ଦେଶରେ ।

ଇନ୍ଦ୍ର—ଆମେ ତ ଏଇଥିଲାଗି ଜଞ୍ଜାଳରେ ପଡ଼ିଛୁ । ଆପଣମାନେ ... ଘର ...ଙ୍କ ଘର ଅବୋର ବସିଥିବେ । କୌଣସି ଦେଶହିତ କାର୍ଯ୍ୟରେ ମଧ୍ୟ ବ୍ୟୟ କରିବେ ନାହିଁ । ବର୍ତ୍ତମାନ ଗ୍ରାମ ସଂଗଠନ କାର୍ଯ୍ୟରେ, ପୁଣି ହରିଜନଙ୍କ ମନ୍ଦିର ପ୍ରବେଶ କାର୍ଯ୍ୟରେ ଟଙ୍କା ବ୍ୟୟ ହେବାର କଥା ଅଛି । ଆପଣ କେତେ ଚାନ୍ଦା ଦେବେ କହନ୍ତୁ ?

ବୀର—ଚାନ୍ଦା ମୁଁ କଣ ଦେଇ ପାରିବି ଆଜ୍ଞା । ଆଉ ମଧ୍ୟ ମୋର କଣ ଅଛି ଯେ ମୁଁ ଚାନ୍ଦା ଦେବି ? ଆଉ ଯାହା ବା ଅଛି, ସେଥିରେ ମୋର କି ଅଧିକାର ଅଛି ? ଆପଣ ଜାଣନ୍ତି, ସେ ସବୁ ତ ମୋର ନୁହେଁ । ଆପଣ ମତେ ଚାନ୍ଦା ମାଗିଲେ ମୁଁ କଣ ବା ଦେଇପାରେ । ପାଞ୍ଚଟଙ୍କାରୁ ତ ବେଶୀ ଦେଇ ପାରିବି ନାହିଁ ।

ଇନ୍ଦ୍ର—ଆଚ୍ଛା, ଆପଣ ଯାଆନ୍ତୁ । ଟଙ୍କା ରଖି ରଖି ସ୍ୱର୍ଗକୁ ନେବେ ।

ବୀର—କର୍ମୀମାନେ ତ ସଭା ସମିତି କରିବେ । ଟଙ୍କା କଣ ହେବ ଆଜ୍ଞା ? କର୍ମୀ କଣ ଟଙ୍କା ନେବେ ?

ଇନ୍ଦ୍ର—(ମନେ ମନେ ରାଗି) କର୍ମୀ ଟଙ୍କା ନେବେ ନାହିଁ ସତ; କିନ୍ତୁ ସେମାନେ ଖାଇବେ ପିଇବେ ତ ?

ବୀର—କର୍ମୀ କହିଲେ ଏଇ ପାଜି ଅଖିର ଲୋକ ତ ଘରୁ ଖାଇ ପିଇ ଆସି ସଭାରେ ଠିଆହୋଇ ଗୃହଭେଦା କହିଦେବେ । ଟଙ୍କା କଣ ହେବ ?

ଇନ୍ଦ୍ର—ଆପଣ ତ ଆଚ୍ଛା ଯୁକ୍ତି କରୁଛନ୍ତି ? ଆଚ୍ଛା କହନ୍ତୁ ତ, ଆପଣ ଯେଉଁ ଟଙ୍କା ଗୁଡ଼ାକ ଜମେଇ ରଖୁଛନ୍ତି ଏପରି ଜମେଇ ରଖିବାରେ ଅପଣମାନଙ୍କର କି ଅଧିକାର ଅଛି ? ଟଙ୍କା ହେଉଛି ଚଞ୍ଚଳା, ଲକ୍ଷ୍ମୀ । କାର୍ଯ୍ୟରେ ଲଗେଇ ଉପଯୋଗ କର, ଦେଶର ଜନସାଧାରଣଙ୍କ ଉପକାର କରନ୍ତୁ । ତାହା ନ କରି ମାଟିତଳେ ପୋତି ରଖୁଛନ୍ତି । ଆପଣମାନଙ୍କ ଭଳି କେତେଟା ଯକ୍ଷ ଦେଶରେ ରହିଥିବାରୁ ଦେଶଟା ଦିନକୁ ଦିନ ନିମ୍ନଗାମୀ ହୋଇ ଚାଲିଛି । ଯାଆନ୍ତୁ ଆପଣ, ମୁଁ କହୁଛି କଂଗ୍ରେସ କାର୍ଯ୍ୟ ନିମନ୍ତେ ହଜାରେ ଟଙ୍କା ଚାନ୍ଦାଦେବେ । ( ପ୍ରସ୍ଥାନ )

ଧୀର—ଏଁ ଶ୍ରୀରାମ ! କଥାନାହିଁ ବାର୍ତ୍ତା ନାହିଁ ଏକା ଥରକେ ହଜାରେ ଟଙ୍କା ଚାନ୍ଦା ! (ଗମ୍ଭୀର ଭାବରେ ଚିନ୍ତା କରି)ଲୋକଟା କେମିତି ଧମକି ଭାବରେ କହିଦେଇ ଚାଲିଗଲା । ପ୍ରକୃତରେ କାହିଁ ଏମାନେ ଟଙ୍କା ରଖୁ ନାହାନ୍ତି ? ଟଙ୍କାର ଲୋଭ ଏଡ଼େବଡ଼ କି ଦୁର୍ଦ୍ଦମ, ତାହା ଏମାନେ ବୁଝିବେ କଣ ? ସେଇ ଟଙ୍କାର ଲୋଭ ଏଡ଼ି ଏମାନେ ରହୁଛନ୍ତି କିପରି ? ଟଙ୍କାର ଲୋଭ ! ଟଙ୍କାର ଲୋଭ ! ଟଙ୍କାର ଲୋଭ ମୁହୂର୍ତ୍ତେ ତ୍ୟାଗ କରି ହେଉ ନାହିଁ । ଟଙ୍କା ଲୋଭ ଚାନ୍ଦା କଲାବେଳେ ନିଜକୁ ଚିର ଅମର ବୋଲି ଚିନ୍ତା କରିବାକୁ ପଡ଼ୁଛି, ଟଙ୍କାହିଁ ଜୀବନ ସହିତ ମନୁଷ୍ୟକୁ ରଖିଛି ବାନ୍ଧି । ଟଙ୍କାର ବନ୍ଧନରେ ବାନ୍ଧି ହୋଇ ମରୁଛି ବୋଲି, ମୁଁ ଆଜି ଧନପତିଙ୍କର ଅପ୍ରିୟପାତ୍ର । ତାହାହେଲେ ଚେଷ୍ଟା କରିବି, ଏ ବନ୍ଧନରୁ ମୁକ୍ତ ହେବାକୁ । ଅର୍ଥ ରାକ୍ଷସର ମୋହ-ପାଶରୁ ମୁକ୍ତ ହେବାକୁ ଚେଷ୍ଟା କରିବି । ଅଜାଡ଼ି ଚେଷ୍ଟା କରିବି ।

———*———

[ପ୍ରସ୍ଥାନ]

## ତୃତୀୟ ଦୃଶ୍ୟ

( ସ୍ଥାନ—ଅପୂର୍ବଙ୍କ ଘରର କୌଣସି ଏକ କକ୍ଷ )

( ଅମିତାର—ବୟସ କୋଡ଼ିଏ । ବର୍ଣ୍ଣ ଗୌର, ପରିଧାନ ସାଧାରଣ ଆଧୁନିକ ଧରଣର )

( ଚିନ୍ତିତ ଭାବରେ ପଦ ଚାରଣ କର )

ଅମିତା—କଂଗ୍ରେସର କହ ବା କମ୍ୟୁନିଷ୍ଟଦଳର କହ ବା ସ୍ୱାଧୀନ ଦଳ କହ, ସମସ୍ତେ ଲାଗିଛନ୍ତି ନିଜର ନିଜର ପ୍ରତିଷ୍ଠା ସ୍ଥାପନ ନିମନ୍ତେ । ସେ କହୁଛନ୍ତି ମୁଁ ସେବକ, ଏ କହୁଛନ୍ତି ମୁଁ ସେବକ, ଅନ୍ୟ ଲୋକ କହୁଛନ୍ତି ମୁଁ ସେବକ । ମୁଁ ଭାବୁଛି ପ୍ରକୃତ ସେବକ କେହି ନୁହେଁ । ଏ ଦଳ ସେ ଦଳର ତ୍ରୁଟି ଖୋଜି ବୁଲୁଛନ୍ତି ନିରନ୍ତର । ମନେ ହୁଏ ସୃଷ୍ଟିଟାରେ ଯେପରି କାହାର ପ୍ରତି କାହାର ସ୍ନେହ ନାହିଁ, ସହାନୁଭୂତି ନାହିଁ । ଅଛି କେବଳ ଆଧିପତ୍ୟର ଆକାଂକ୍ଷା ।

ଅପୂର୍ବ—(ପ୍ରବେଶ) ଅଢ଼େଇ ଘଣ୍ଟାରେ ସଭା ହେବ । ବଳାନବାବୁ ଆସିବେ ବକ୍ତୃତା ଦେବାକୁ । ତାଙ୍କୁ ଆମର ଏଆଡୁ ଅଭିନନ୍ଦନ ଇତ୍ୟାଦି ଦିଆଯିବ । ଦେଶରେ ସେ ଜଣେ ପ୍ରଧାନ ନେତା । ଅନେକଗୁଡ଼ାଏ ଲେଖା ଲେଖି କରିବା ରହିଛି ।

ଅମିତା—ଆଚ୍ଛା ! ଭାଇ ! ତୁମେ ତ ସବୁଦିନେ ସ୍ୱାଧୀନଦଳର ପ୍ରଶଂସା କରୁଛ । ଏଇ ସ୍ୱାଧୀନ ଦଳ ଭିତରେ ତ ପୁଣି ନାୟକତ୍ୱ ସୃଷ୍ଟି ଚାଲିଛି । ଆମେ ତ ପୁଣି ସେଇ ନେତାଙ୍କର [illegible] 'ଯୋ ହୁକୁମ୍' କହି ଚଳିବାକୁ ପଡ଼ିବ, [illegible] ପଥ । ତାହାହେଲେ ଆମେ ସ୍ୱାଧୀନ ହେଲେ କିପରି ?

ଅପୂର୍ବ—ତା ନ ହେଲେ ଦଳର ଶୃଙ୍ଖଳା ରହିବ କିପରି ଅମିତା ।

ଅମିତା—ଦଳର ଶୃଙ୍ଖଳା ଯଦି ପ୍ରକୃତ, ତେବେ ଗୋଟିଏ ବ୍ୟକ୍ତି

ଦଳି ବାଂଟିଥାଏ ! ତାର ଭିତରେ ରହିଗଲେ ତ ସବୁ ଝୁଞ୍ଜିଟ ଯିବ ! ଯେ କୌଣସି ମତରେ ଲୋକଙ୍କର ଉପକାର କରିବା ଯଦି ଆମର ଉଦ୍ଦେଶ୍ୟ ହୁଏ, ତାହାହେଲେ ଗାନ୍ଧିଜୀଙ୍କର କାର୍ଯ୍ୟ କମ ଭିତରେ ତ ଗ୍ରାମ ସଂଗଠନ କାର୍ଯ୍ୟଟା ରହିଛି । ବର୍ତ୍ତମାନ ଆମର ତାହାହିଁ କରିବା ଉଚିତ । ଆମେ ନିଜ ଇଚ୍ଛାରେ ସବୁ ପ୍ରକାର କ୍ଷମତା ଲାଭ ଆଶାରେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିବା ଚାହିଁକି ?

ଅପୂର୍ବ—ତୋର ଏ ସବୁ ପାଗଳାମୀ କଥା ମୁଁ କିଛି ବୁଝିପାରୁନାହିଁ । ମନୁଷ୍ୟ ମନୁଷ୍ୟ ଭଳି କାମ କରିବାକୁ ହେବ । ଯେଉଁମାନେ ଆମର ଅନିଷ୍ଟ କରିଛନ୍ତି, ସେମାନଙ୍କ ଉପରେ ପ୍ରତିଶୋଧ କଳ୍ପନା ହେବା ତ ସ୍ୱାଭାବିକ, ବର୍ତ୍ତମାନ ଚନ୍ଦ୍ରନାଥ ଆସିଛି ଏଠି ଗୋଟାଏ ଆନ୍ଦୋଳନ କରିବ, ହରିଜନମାନଙ୍କୁ ମନ୍ଦିର ପ୍ରବେଶ କରିବା ନିମନ୍ତେ ଚେଷ୍ଟା କରୁଛି, ତାର ଚେଷ୍ଟା ଯେପରି ସଫଳ ନ ହୁଏ ତାହାହିଁ କରିବାକୁ ହେବ। ଯେଉ-ମାନେ ବିନା କାରଣରେ ଆମମାନଙ୍କୁ ଅବହେଳା କରିଛନ୍ତି, ସେଇମାନଙ୍କୁ ତ ପୁଣି ନିଜର ପ୍ରତିଷ୍ଠା ଦେଖେଇ ଦେବାକୁ ହେବ !

ଚନ୍ଦ୍ରନାଥ ପଣ୍ଡିତ—[ ପ୍ରବେଶ ] କଣ ହେଉଛି ହୋ ?

ଅପୂର୍ବ—କଥା ପଡ଼ିଥିଲା ସେଇ ମନ୍ଦିର ପ୍ରବେଶ ସମ୍ବନ୍ଧରେ ।

ଚନ୍ଦ୍ରନାଥ—କଣ, କଣ, ମନ୍ଦିର ପ୍ରବେଶ କଣ ?

ଅପୂର୍ବ—ଆପଣ ଶୁଣି ନାହାନ୍ତି, ହରିଜନମାନେ ମନ୍ଦିର ପ୍ରବେଶ କରୁଛନ୍ତି । ଆଚ୍ଛା କହନ୍ତୁ ତ ଅଜ୍ଞା ! ହାଡ଼ି ପାଣଙ୍କର ହରିଜନ

ନାଁ କପଟର ହେଲା । ସେମାନଙ୍କୁ ହରିଜନ ବୋଲି ପ୍ରଥମେ ଡାକିଲା କିଏ ?

ଚନ୍ଦ୍ରନାଥ—(ଉତ୍ତେଜିତ ଭାବରେ) ଗାନ୍ଧୀ ନିମିତ୍ତ ମହାତ୍ମା ବୋଲେଇଲେ, ହାଡ଼ିମାନେ ମଧ୍ୟ ତାଙ୍କର ନିଜ କଥାରେ ହେଲେ ହରିଜନ ।

ଅମିତା—( ମନେ ମନେ ବ୍ୟସ୍ତ ହୋଇ ) ଆପଣ ଯାହା କହନ୍ତୁ, ଗାନ୍ଧୀଜୀଙ୍କର ନାଁଟିକୁ ଶୁଣିଦେଲେ ଭକ୍ତିରେ ସର୍ବାଙ୍ଗ ପୁଲକି ଉଠେ, ଯାହାଙ୍କର ତ୍ୟାଗ ଆଉ ସ୍ୱଗୁଣର ବଳରେ ଆଜି ଆମେ ଦେଶଟାକୁ ଚିହ୍ନିବାକୁ, ଜାଣିବାକୁ ସଚେଷ୍ଟ ହୋଇ ପାରିଛୁ, ତାଙ୍କୁ ନିନ୍ଦା ଦେଇ ମାରିବା ନାହିଁ । କୌଣସି କାଳେ, କେହି ଜଣେ ବୁଝେ; ତାଙ୍କର ଦୟାରୁ ତ ଆଜି ଦେଶ ଜାଗ୍ରତ ଯାହାରେ !

ଚନ୍ଦ୍ରନାଥ—(ହସିଯାଇ ) ଗାନ୍ଧୀ ଦେଶ ଜାତିକି ଖାଲି ଜାଗ୍ରତ ଅନ୍ତକୁ ନେଇଗଲା ନା ଆଉ କଣ ? ଦେଖୁ ଦେଖୁ ହିନ୍ଦୁ ଧର୍ମ ତ ଲୋପ ହେବାକୁ ବସିଲଣି, ଆମେ କେବଳ ଗୁହ୍ମ ଦମ୍ଭ, ଦେଶରେ ଆମ ଜାତି ଜଣେ ବି ଯଦି ବଞ୍ଚିରହି ସେଇ ସନାତନ ନୀତିକି ନେଇ ଜାଗିଥିବେ, ଯେବେ ହିନ୍ଦୁର ହିନ୍ଦୁତ୍ୱ ପାଦେ ହେବସ ପରେ ମୁଣ୍ଡ ଟେକି ଉଠିବ ପୁଣି । ଦେଖ ଅମୂର୍ତ୍ତି ଯାହା ହେଉଛି ହେଉ, ତୁମେ ବ୍ରାହ୍ମଣ ସନ୍ତାନ, ତୁମର ମାନିନେବା ଉଚିତ ଯେ, ସନାତନୀ ବ୍ରାହ୍ମଣ ଅମର ଆଉ କୌଣସି ନୀତି ଅବଲମ୍ବନୀୟ ନୁହେଁ ।

ଅମୂର୍ତ୍ତି—ଅନ୍ୟ ତ ଆମର ଏଠି ସଭା ହେବ । ଆପଣଙ୍କୁ ସେ ସଭାର ସଭାପତି କରିବାକୁ ନିଷ୍ପତ୍ତି ହୋଇଛି, ଆପଣ ଲୋକଙ୍କୁ ବୁଝେଇ ଦେବେ । ମୁଁ ଯାଉଛି, ଅପଣ ଆସନ୍ତୁ । ( ପ୍ରସ୍ଥାନ )

ଚନ୍ଦ୍ରନାଥ—ବୁଝେଇ ଦେବା କଣ କଥା ! ଆଗେ ଘରେ ତ ବାପାମାନେ ହୋଇ ଗଲେଣି । ତୁମର ବି ଏଇ ଅବସ୍ଥା ହୋଇଗଲାଣି ଗାନ୍ଧୀଙ୍କ ନାଁ ଶୁଣିଲେ କେମିତି ଉଠିଉଠି ପଡ଼ୁଛ ।

ଅମିତା—ଅଜ୍ଞା, ମୁଁ ତ ମିଛକଥା କହୁନାହିଁ—।

ଚନ୍ଦ୍ରନାଥ—(ରାଗିଯାଇ ବାଧା ଦେଇ) ହଁ, ହଁ, ମିଛ କାହିଁକି କହିବୁ । ଏକାଥରକେ ସତ କହିଲୁ । ଅହା ହା, କି ସୁନ୍ଦର ସତକଥା !

ଅମିତା—ଆପଣମାନେ ଦେଶର ପ୍ରକୃତ ହିତ ସମ୍ବନ୍ଧରେ ଚିନ୍ତା କରନ୍ତି ନାହିଁ, ସେଥିପାଇଁ ସନାତନୀ ଅଧୁନିକ ପନ୍ଥୀ କଥା ନେଇ ତର୍କ କରୁଛନ୍ତି । ଅସ୍ପୃଶ୍ୟତା ନିବାରଣ ନ ହେଲେ ଦେଶର ଅନେକଲୋକ ଯେ ବିଧର୍ମୀ ହୋଇଯିବେ, ଏକଥା ଆପଣ ଭାବୁ ନାହାନ୍ତି କାହିଁକି ?

ଚନ୍ଦ୍ରନାଥ—[ ରାଗ ] ଏଁ କେତେଗୁଡ଼ିଏ ଶବ୍ଦ ଶିଖି ଗଲୁଣି ତ ଏ ଭିତରେ । ସନାତନୀ ଶବ୍ଦ ଗୋଟାଏ ବ୍ୟବହାର କରି ପକେଇଲୁ ଯେ, ତାର ଅର୍ଥ କଣ ବୁଝିଲୁଣି ତ ? ଆମେ ତ ଏଣିକି ଆମର ସ୍ମୃତି ଶାସ୍ତ୍ର ଗୁଡ଼ାକୁ ପାଣିକି ପେଲିଦେଇ ଆସିବୁ ତୁମମାନଙ୍କ ପାଖକୁ, ଆଉ କଣ ? ସ୍ତ୍ରୀ ତ ହେଲେ ଅନ୍ତଃପୁରିକା, ସେମାନଙ୍କୁ ବାହାରକୁ ଆଣିଲେ । [ ବିଷାଦରେ ] ସେମାନେ ନାନା ଦୁର୍ନୀତି, ନାନା କୁଅଭ୍ୟାସ ଆରମ୍ଭ କରିବେ, ଏଇଥିରେ ଦେଶ, ଜାତି ଯିବ ରସାତଳକୁ । ଅମୃତେ ତ ମୋର କୋଉଁକଥା ଶୁଣିଲା ନାହିଁ, ସେଇଦିନଠୁ ଯଦି ଭଉଣୀଟାକୁ ଘରେ ରଖି ଥାନ୍ତା, ଏତେ ଦୁର୍ଯୋଗ ଦେଖିବାକୁ ପଡ଼ି ନ ଥାନ୍ତା—।

ଅମିତା—ଅଜ୍ଞା ! ଆପଣ ସ୍ତ୍ରୀମାନଙ୍କୁ ତ ଅନ୍ତଃପୁରିକା ବୋଲି କହିଲେ, ଅନ୍ୟ ଦେଶରେ କାହିଁକି, ଆମରି ଏଇ ଭାରତ ଦେଶରେ, ସ୍ତ୍ରୀମାନେ ବାହାରକୁ ବାହାରି କାର୍ଯ୍ୟ କରି ଗଲେଣି ।

ଚନ୍ଦ୍ରନାଥ—[ ବାଧା ଦେଇ ] ଅହା ହା, ସ୍ତ୍ରୀମାନେ ଏକାବେଳକେ ଦେଶ ଗୋଟା ଯାକ ଉଦ୍ଧାର କରି ଦେଲେଣି, ଅରେ ଏ ସବୁ ତ ସମାଜକୁ ଧ୍ୱଂସ ପଥରେ ଆଣିବା ନୀତି । ବାହାରକୁ ବାହାରି

ଯେଉଁଠି ଯେଉଁ ସ୍ତ୍ରୀଟା ଭଲରେ ଅଛି କହନ୍ତୁ ? ସ୍ତ୍ରୀ ପୁରୁଷର ସମ୍ମୁଖକୁ ଆସିଲେ ସେ ଭ୍ରଷ୍ଟା ହେଲ ବୋଲି କହିବାକୁ ହେବ । ସ୍ତ୍ରୀ ଯେତେ ପୁରୁଷର ଅଧୀନସ୍ଥ, ସେ ଯେତେ ଗୋପନ ସ୍ଥାନରେ ରହି ପାରିବ ସେତେକ ଭଲ । ଦେଖୁଛ ତ ସ୍ତ୍ରୀ କେତେଟା ବାହାରି ତିନି କୁଳକୁ କାଳଙ୍କ ଗର୍ଭରେ ବୁଡ଼େଇ ସାରିଲେଣି ।

ଅମିତା—ଅନ୍ୟ ଦେଶରେ ସ୍ତ୍ରୀମାନେ ପୁରୁଷ ସମ୍ମୁଖକୁ ଆସି ସକଳ ପ୍ରକାର ଚର୍ଚ୍ଚା କରୁଛନ୍ତି । ସ୍ତ୍ରୀମାନେ ଆଳାପ ଆଲୋଚନା କଲେ ମାତେ କଣ ଭ୍ରଷ୍ଟା ହୋଇଯିବେ ?

ଚନ୍ଦ୍ରନାଥ—ହଁ, ହଁ, ନୁହେ ଆଉ କଣ ? ତୁମଠୁଁ ତ ଆମେ ଶିଖିବାକୁ ରହିଲ । ଆଜି ଆଳାପ ଆଲୋଚନା କର; କାଲିକି ହସି ହସି କଥା କହ । ତା ପରେ ସ୍ନେହ, ତା ପରେ ପ୍ରେମ—ଏହା ତ ଶୃଙ୍ଖଳ ! ସେଥିପାଇଁ ମୁଁ କହେ ସ୍ତ୍ରୀ ଜାତି ଆମ ଉନ୍ନତି ପଥର ପ୍ରଧାନ ଅନ୍ତରାୟ । ସେଥିପାଇଁ ପ୍ରବଚନେ କହୁଛନ୍ତି ସ୍ତ୍ରୀଙ୍କ ହାତରେ ନିଆଁର ବେଢ଼ି ଦେଇ, ନାକ କାନ ଫୋଡ଼ି ଘର ଭିତରେ ରଖ ।

ଅମିତା—ଆପଣ ଅତି ନିଷ୍ଠୁର ଭାବରେ କଥା କହୁଛନ୍ତି । ଆପଣମାନେ ବେଶ୍ୟାର ନୃତ୍ୟ ସଙ୍ଗୀତ ଶୁଣି ପ୍ରଶଂସା କରନ୍ତି । ସେତେବେଳେ ନିଜର ସ୍ତ୍ରୀ, ସମାଜ, ସଂସାର, ଧର୍ମଶାସ୍ତ୍ର, ସବୁ ଯାଆନ୍ତି ଭୁଲି । ଅଥଚ ଆପଣମାନେ ହିଁ କହନ୍ତି, ସ୍ତ୍ରୀ ପୁରୁଷର ମୁଖାବଲୋକନ କଲେ ଭ୍ରଷ୍ଟା ହୋଇଯାଏ ବୋଲି ।

ଚନ୍ଦ୍ରନାଥ—ଏଇ ତ ସ୍ତ୍ରୀମାନେ ଅସାର ଜ୍ଞାନ ପାଇଲେ ହିଁ ଅନର୍ଥ କରନ୍ତି । ବୁଝିଲ ତ ? ସେଥିପାଇଁ ମୁଁ କହେ, ସ୍ତ୍ରୀମାନଙ୍କୁ ନିରକ୍ଷର କରି ରଖ, ଅନ୍ତଃପୁର ଭିତରେ ବନ୍ଦୀ କରି ରଖ। କାଠି କଥା, ମୋ ସମ୍ମତି ନାହିଁ ସ୍ତ୍ରୀ କରିବାକୁ ଜୋର ଯାହା

ହେଉଛି । ଏ କଥା କଣ । ଛି ଛି ଏ ସ୍ଥାନରେ ପାଦ ଦେବା ଉଚିତ ନୁହେଁ । [ପ୍ରସ୍ଥାନ]

ଅମିତା—ବୋଉ କହୁଛି ବିବାହ କର । କଣ କରିବି, ବିବାହ କରି ଦେଶର ସେବା କରି ପାରିବି ତ ? କାହିଁକି ବିବାହ ନ କରି ଜଣେ ଦେଶର କାମ କଲେ ଚଳିବ ନାହିଁ ?

ଅମିତା ମା—[ପ୍ରବେଶ] ଅମିତା ।

ଅମିତା— କଣ ବୋଉ ।

ଅମିତା ମା—କିଆଁ ନାଥ ଦେଇଦାନ୍ତୁ ଅପେକ୍ଷା କରିଛୁ, ତୁ ତ ଆଉ କଛି କହୁଛୁ ନାହିଁ । ତୋର ଭଲ ହେବା ଲକ୍ଷଣ, ହଁ ବୋଲି କଥା ଦେବାକୁ ବାଧ୍ୟ ହେଉଛି ।

ଅମିତା—ବିବାହ ନ କଲେ କଣ ଚଳିବ ନାହିଁ ବୋଉ ?

ଅ: ମା—ବିବାହ ହେଉଛି ମନୁଷ୍ୟ ସମାଜର କର୍ତ୍ତବ୍ୟ । ଅନ୍ୟଥା ଜୀବନ ରହିଯାଏ ଅସମ୍ପୂର୍ଣ୍ଣ ହୋଇ । ଗୃହସ୍ଥାଶ୍ରମରୁ ଚତୁର୍ବର୍ଗ ଫଳ ଲାଭ ହୁଏ । ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି, 'ନିର୍ଲିପ୍ତ ହୋଇ କର୍ମ କରି ଯିବାକୁ ହେବ ।' ଏହାର ଅର୍ଥ ସଂସାର ଯାତ୍ରା ନିର୍ବାହ ନିମନ୍ତେ ନିଜକୁ ଅର୍ପଣ କରି ଦେବାକୁ ହେବ ।

ଅମିତା—ମୁଁ କଣ ବୁଝୁଛି ଜାଣୁ ବୋଉ ! ବର୍ତ୍ତମାନ ସମାଜର ଅବସ୍ଥା ବଡ଼ ଜଟିଳ ହୋଇ ପଡ଼ିଛି । ପ୍ରତ୍ୟେକ ଘ ଯେ ଟିଏ ଗୋଟିଏ ବାଲ୍ୟରେ ପରିଣତ ହୋଇଯିବ, ଏଣିକି । ଆମ ଦେଶର ଘର ଘର ରେ ଯେଉଁ ମାନେ ଅନ୍ଧ ବିଶ୍ୱାସରେ ବନ୍ଧନର ହୋଇ ପଶୁ ପରି କାଳ କଟାଉଛନ୍ତି, ମୁଁ ସେମାନଙ୍କର ଜୀବନର ସାଧନରେ ଲାଗିବି । ଦଶ ବର୍ଷରେ ଯଦି ଦଶଟି ଝିଅରେ କୋଡ଼ିଏ ଲୋକଙ୍କୁ ମନୁଷ୍ୟ କରିପାରେ, ସେଇ କୋଡ଼ିଏ ଜଣ ଆଉ ଦଶବର୍ଷ ପରେ ଆଉ କେତେଟି ଲୋକଙ୍କୁ ଶିକ୍ଷିତ

ପଥକୁ ନେଇ ଯାଇ ପାରିବେ । ସଂସାର କରି ଗୋଟିଏ ଘରକୁ ଜଗିବା ଅପେକ୍ଷା ଧର୍ମହୀନ ସଂସାରକୁ ଉନ୍ନତ ଅଡ଼କୁ ନେଇ ଯିବା କଣ ଅଧିକ ବଡ଼ କଥା ନୁହେଁ ବୋଉ ?

ଅ: ମା—ସଂସାରଟା ବଡ଼ ବିଷମ ଅମିତା ! ତାର ଗତିପଥ ବଡ଼ ଜଟିଳ । ମନୁଷ୍ୟ ମନ, ଏକାକୀ ଗତି କରୁ କରୁ ଯଦି କେଉଁଠି ବାଧା ଘଟେ, ସମ୍ଭାଳିବା ଦୁର୍ବିସହ ହୋଇ ପଡ଼େ । ସେଥିପାଇଁ ଭଗବାନ କାମ ଜଣଙ୍କୁ ଗୋଟିଏ ଗୋଟିଏ ସ୍ଥାନ ନିର୍ଦ୍ଦେଶ କରି ଦେଇଛନ୍ତି ।

ଅମିତା—ଗୋଟିଏ ନୀତି ଚିରକାଳ ରହିବ କି ବୋଉ ? ଯଦି ରହିଥାନ୍ତା, ଆମ ମହାଭାରତରେ ଅଛି ଦ୍ରୌପଦୀ ପାଞ୍ଚ ପତିଙ୍କର ଭାର୍ଯ୍ୟା ଥିଲେ ; ତଥାପି ତାଙ୍କୁ ଆମେ ସତୀ ବୋଲି ମାନୁଛୁ । ତୁମେ ଯଦି ସମ୍ପ୍ରତି ଦ୍ରୌପଦୀଙ୍କୁ ସତୀ ବୋଲି କହିବାକୁ କୁଣ୍ଠିତ ହୁଅ ନାହିଁ । ପୁଣି ସେଇ ଯଦି ପଣ୍ଡିତ କହୁଛନ୍ତି କୌଣସି ସ୍ତ୍ରୀ ଯଦି ପୁରୁଷର ସମ୍ମୁଖରେ ବସି କଥାବାର୍ତ୍ତା କରେ, ତେବେ ସେ ହୋଇଯିବ ଭ୍ରଷ୍ଟା—ଅନ୍ୟ ହୁଏ ତ ସେ ଧାରଣା ଆମର ମଧ୍ୟ ରହିଛି ! ପୁରୁଷ ସନ୍ନ୍ୟାସ ବ୍ରତ ଅବଲମ୍ବନ କରି ପାରୁଛି । କିନ୍ତୁ କୌଣସି ସ୍ତ୍ରୀ ସେ ନୀତି ନେବା ଦେଖାଯାଉ ନାହିଁ । ମୁଁ ଭାବୁଛି ସବୁ [illegible] ପରି ସନ୍ନ୍ୟାସ ଗ୍ରହଣ ନୀତି ମୁଁ ଇ ପ୍ରଚୁର କରିବି । ସେ ସନ୍ନ୍ୟାସ ଦ୍ୱାରା ହେବ ଜନସାଧାରଣଙ୍କ ସେବା ।

ଅମିତା ମା—ଲୋକଙ୍କର ବିଶ୍ୱାସ ଭାଜନ ହେବା ବଡ଼ କଠିନ ଅମିତା । ତୋର କଥା ଉପରେ କେହି ବିଶ୍ୱାସ କରିବେ ନାହିଁ ।

ଅମିତା—କେହି ବିଶ୍ୱାସ କରୁ ବା ନ କରୁ ତୁ ଜଣେ ମାନ ବିଶ୍ୱାସ ରଖି ଥିଲେ, ମୋର ସବୁ କାର୍ଯ୍ୟ ସିଦ୍ଧି ହୋଇ ଯିବ ।

ଚିରକାଳର ସେଇ ଗତାନୁଗତିକ ପନ୍ଥାରେ ଚାଲିବାକୁ ମୋର
ଆଉ ଇଚ୍ଛା ହେଉ ନାହିଁ । ତୁ ମତେ ଅନୁମତି ଦେ ବୋଉ,
ଦେଶ କୋଣାର୍କକୁ ଥରେ ଆଖିରେ ଦେଖି ଜନ୍ମ ସଫଳ କରେ ।
ଲୋକଙ୍କର ବିଶ୍ୱାସ ଅବିଶ୍ୱାସ କଥା ଉପରେ ବିଶ୍ୱକବି ରବୀନ୍ଦ୍ର
କହୁଛନ୍ତି—"ନିନ୍ଦା ଦୁଃଖ ଅପମାନେ ଯେତେ ଆଘାତ ଖାଇ,
ତବୁ ଜାନି କିଛୁଇ ସେଥା ହାରିବାର ତୋ ନାଇଁ" । ଲୋକେ
ଅନୁମାନ କରି ଯଦି ନିନ୍ଦା ଦିଅନ୍ତି, ସେଥିରେ ମୁଁ କ୍ଷୋଭ
କରିବି ନାହିଁ ।

ଅମିତା ମା—ପୁଅ ଝିଅ ଜନ୍ମ କରିଥିଲି । ମନରେ ଆଶା ଥିଲା
ସେମାନେ ବିବାହ କରି ସଂସାର କରିବେ, ସେମାନଙ୍କର ସୁଖ
ଦେଖି ମୋର ଧନ ସରିଯିବ ।

ଅମିତା—ବୋଉ ! ସଂସାର କରିବାକୁ ତ ସୃଷ୍ଟିରେ ବହୁତ ଲୋକ
ଅଛନ୍ତି । ମୁଁ ସଂସାର ନ କଲେ କାହାରି କିଛି କ୍ଷତି
ହେବ ନାହିଁ । ଅତୁଳ ମଧ୍ୟ ମୁଁ ସଂସାରୀ ହୋଇ ସନ୍ତାନ ଜନ୍ମ
କରି ଥିଲେ, ସେ ମୋର ଶ୍ରାଦ୍ଧ କ୍ରିୟା କରିଥାନ୍ତା । ବର୍ତ୍ତମାନ ମୁଁ
ଜଗତରେ ଯଦି କିଛି ଭଲ କାର୍ଯ୍ୟ କରେ ତେବେ ଲୋକେ
ମୋର ଶ୍ରାଦ୍ଧ କରି ଦେବେ । ମନୁଷ୍ୟ ତ ଜନ୍ମ ହେଲେ ମରିବ,
ଭଲ କାର୍ଯ୍ୟ କରି ଥିଲେ ତ କୌଣସି ଲୋକ ଶ୍ରାଦ୍ଧ କରି
ଦେବ । ସେଥି ପାଇଁ ତୁ ଦୁଃଖ କରିବୁ ନାହିଁ ।

ଅମିତା ମା—ବୋଉ, ଭଗବାନ ତୋର ମନ କାମନା ପୂର୍ଣ୍ଣ କରନ୍ତୁ ।

( ପ୍ରସ୍ଥାନ )

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ସ୍ଥାନ—ହରିଜନ ସାହି
(ଅର୍ଜ୍ଜୁନ ଚରଣ, ଶିବଣ, ଇନ୍ଦ୍ରନାଥ, ସ୍ଲୋଗାନ ଜାତୀୟ
ସଙ୍ଗୀତ ଗାଇ ପ୍ରବେଶ)

ଜାଗରେ ଜାଗରେ ଜାଗ
ଆସିଅଛି ପରା ଜୀବନେ ଆମର ମୂର୍ତ୍ତି ଅଦ୍ଭୁତ ଯୋଗ
ଅଳସ ଆଖିର ଆବରଣ ଖୋଲି
ଆମ ଦେଶ ବୋଲି ପଡ଼ରେ ଦାହାରି,
ଦେଖୁଅଛି ପରା ହିଂସାର ଅନଳେ ଜଳିଲା ସୁନାର ବଙ୍ଗ ।
ସେ ଦାରୁଣ ଜ୍ୱାଳା ଲଗିଛି ରକତେ
ଦଗ୍ଧ ହୋଇଯାଏ ମରମ ସହିତେ
ତବୁ ନାହିଁ ଘନ ମାନସ ବୀଣାରୁ ସମର ସଙ୍କେତ ଗୀତ ।
ଆସ ଆସ ବୀର ହେ ଭାରତ ଭାଇ
ଅପମାନ ଯାଉ ଅପମାନିତ ହୋଇ
ନ ଛୁଇଁ ତୁମକୁ କହୁଛୁ ଆମେ ଏ ମରଣ ଦୁଃଖୀ ହୋଇ ।
ଆସ ହେ ବ୍ରାହ୍ମଣ ଛାଡ଼ ଅଭିମାନ
ଅନ୍ତ୍ୟଜଙ୍କୁ ମଣ ତୁମରି ସନ୍ତାନ
ଆସ ସନାତନୀ ହୋଇ ଆଜ ଭୁଲି ଅଛୁଆଁଙ୍କୁ ଛୁଅଁ ଆଗ

ଭାରତରେ ଜନନୀ ଜନ୍ମଭୂମି ପୂଜା
ଜୟ ଜୟ ଗାଇ ଉଡ଼ାଅରେ ଧ୍ୱଜା
ଏତେ ଦିନେ ପୂର୍ଣ୍ଣ କରିବେ ଯାହାଙ୍କ ସ୍ୱାଧୀନ ସମର ଜାଗ ।

ରଘୁନାଥ—କଲ୍ୟାଣ ଅନ୍ୟାନ୍ୟ ହରିଜନ ଭାଇ ! ଆଜି ମୁଁ ତୁମମାନଙ୍କୁ ଏତିକି ମାତ୍ର କହୁଅଛି, ତୁମମାନଙ୍କୁ ଆଜି ଭାଇ ବୋଲି ସମ୍ବୋଧନ କରିବାବେଳେ ଅନେକ ଦିନରେ ଆତ୍ମା ମୋର ସନ୍ତୁଷ୍ଟ ହୋଇ ଉଠୁଛି । ମୁଁ ବୁଝି ପାରୁଛି ଭାଇ ପ୍ରତି ଭାଇର ଯାହା କର୍ତ୍ତବ୍ୟ, ତାହା ଆମେ କରି ପାରି ନାହୁଁ । କଂଗ୍ରେସ ନାମରେ ଭାରତରେ ଏହି ଯେଉଁ ବଡ଼ ସଭା ପ୍ରାୟ ପଚାଶ ବର୍ଷ ହେଲା ପ୍ରତିଷ୍ଠା ହୋଇ ଭାରତର କଲ୍ୟାଣ କାମରେ କାର୍ଯ୍ୟ କରି ଆସୁଛି, ସେଥିରୁ କାର୍ଯ୍ୟମାନଙ୍କରେ ଅସ୍ପୃଶ୍ୟତା ନିବାରଣ ହେଉଛି ପ୍ରଧାନ କାର୍ଯ୍ୟ । ଆମମାନଙ୍କର ପରମ ପୂଜ୍ୟ ଋଷିମାନଙ୍କ ମହାତ୍ମା ଗାନ୍ଧୀ ଏକଥା କୌଣସି ମତେ ଭୁଲନ୍ତି ନାହିଁ; କାରଣ ତାଙ୍କର ଅତି ପ୍ରିୟ ହରିଜନମାନେ ମନ୍ଦିର ମଧ୍ୟକୁ ପ୍ରବେଶ କରି ପାରୁ ନାହାନ୍ତି ବୋଲି । ଆଜି ସଭ୍ୟ ଦର୍ଶ ଜଗତର ରୁଷ, ଜର୍ମାନୀ, ଜାପାନ, ଇଂଲଣ୍ଡର ଭୀଷଣ ସମର ସଂଘଟନ ଭିତରେ, ଭାରତର ଅବସ୍ଥା ପରିବର୍ତ୍ତିତ ହେବାକୁ ଯାଉଥିବା ବେଳେ, ଭାରତ ଭିତରେ ଯେଉଁ ସାମ୍ପ୍ରଦାୟିକ ହତ୍ୟାକାଣ୍ଡ ଚାଲିଛି, ତାହା ସ୍ମରଣ କରି ଦୁଃଖୀ ଏବଂ ଲଜ୍ଜିତ ମସ୍ତକ ଅବନତ ହୋଇ ପଡୁଛି । ମୁଁ ଆଜି ତୁମମାନଙ୍କୁ ଏତିକି କହିବାକୁ ଚାହେଁ, ତୁମେମାନେ ଏତିକିବେଳେ ଆମମାନଙ୍କଠାରୁ ଦୂରରେ ନ ରହି, ନିଜକୁ ଅଲୁଅଁ ବୋଲି ନ ଭାବି, ଆମ ସଙ୍ଗେ ମୁକ୍ତି ସହଯୋଗ କରି ଦୁର୍ଦ୍ଦଶାଗ୍ରସ୍ତ ଦେଶକୁ ରକ୍ଷା କର ।

ବିଦ୍ୟାଧର—ଆମେ ତମର ଏ ବଡ ବଡ଼ କଥାର ଅର୍ଥ ଜମାରୁ ବୁଝୁନୁ । କଂଗ୍ରେସ ନାଁ ଧରି ଆଉ କେତେ କାଳ ପେଟରେ ଓଦା କନା ଦେଇ ପଡ଼ିବୁ । ଆମମାନଙ୍କୁ ପଠାଣ ଡାକୁଛନ୍ତି, ମାସକୁ ପଚାଶ ଟଙ୍କା ଦରମା ଦେବ, ଖାଇବାକୁ ପିଇବାକୁ ଦେବେ । ଆଜି ତମକୁ ମହାପ୍ରଭୁ ଭଲ କରିଥାନ୍ତୁ । ଆମର ତ ଅନ୍ୟାୟ ଅନ୍ନ କଣି ଟିକିଏ ନ ମିଳିଲେ ରହି ପାରୁନୁ, ତାହା ମଧ୍ୟ ଦେବେ ତାଙ୍କ ପାଖକୁ ନ ଯାଇ, ତମର ଏ ନୁକୁସ ସୁଆଗ କଥା କାହିଁକି ଶୁଣିବୁ ସେ ।

ପରଶର—କାଇଁରେ ବିଦ୍ୟା ତୁ କଣ ଜାଣୁନୁ, ନିଉଟିନ ପାଦ୍ରି ସାଇବ ସେଇଠ ଅଛି ମୋର ନାନା ଉପକାର କରିଛି, ମୋ ସ୍ତ୍ରୀଟା ବାତ ରୋଗରେ ପଡ଼ିଥିଲା ଯେ, ଔଷଧ ପଥ୍ୟ ଦେଇ ଭଲ କଲା । ମୁଁ ତ ଜରରେ ପଡ଼ିଥିଲି, କୁଇନାଇନ ଦେଇ ଭଲ କଲା । ପିଲାଟେଲିକୁ ପିଲାଟାକୁ ଦଶ ଜୁଡ଼ିଆ ଦେଇଛି, ଟଙ୍କା ଦେବି ବୋଲି କହୁଥିଲା; କାହିଁକି ଘରର ଘେଣି ଦେବି ବୋଲି ନେଲି ନାହିଁ । ଖ୍ରୀଷ୍ଟିୟାନ ଧରମ ନେଲେ ମୋର ସବୁ ଭଲ ହେବ ବୋଲି କେତେଥରର କହି ଯାଉଛନ୍ତି । ମୁଁ ଆଉ କାହା କଥା ଶୁଣିବ ନାହିଁ । ଆଜ ତମର ମୁଲାରୀ ଦେଖିଲା ପୁଅଟିକୁ ଗଲେ ମାରି ମାରି ଧର ଧର କରୁଛନ୍ତି । ଖ୍ରୀଷ୍ଟିୟାନ ହେଲେ ଆମକୁ ପାଖରେ ବସାଇ ଖୁଆଇଲେ ଘରେ ଗୁ' ନୁଆଇବେ ।

ବିଦ୍ୟାଧର—କଂଗ୍ରେସ ପାର୍ଟିରେ ରହିଲେ ଆମର କି ଲାଭ ଅଛି ? ଏବେ ଯେଉଁ ସ୍ୱାଧୀନ ଦଳ ହୋଇଛନ୍ତି ତାଙ୍କୁ କହିଲେ ତାଙ୍କ ସେଠି ଗୋଟିଏ କି କବସିନ ଟିକିଏ ମିଳନ୍ତା, ଆମ କଂଗ୍ରେସ ସରକାର ଆମ ପାଇଁ କଣ କରି ପକାଉଛନ୍ତି ଯେ, ଆମେ ଆମ କଂଗ୍ରେସ ଆମ କଂଗ୍ରେସ ହେଉଥିବା ।

ପଗାଧର—ନାଇଁ ଅମେ ପାଦ୍ରୀ ହୋଇ ଗଲେ ତ ଗଲ, ଏତେ କଥା କାହିଁକି ? ଏଣେ ଆଙ୍କୁ ଡାକିବେ ତେଣେ ତାଙ୍କୁ ଡାକିବେ, ଆମେ କାହା କଥା ଶୁଣିବୁନୁ। ସେଇ ଖିରସ୍ତାନ ଧରମ ଏକା ବଡ଼ ଭଲ ।

କଲ୍ୟାଣ—ଭାଇମାନେ ! ମୁଁ ଅଜ ଗୋଟିଏ କଥା କହୁଛି । ବଡ ଦୁଃଖର କଥା, କେତେ ଯୁଗ ହେଲା ମହାତ୍ମାଗାନ୍ଧୀ ଆମ ପାଇଁ ଲଢ଼ି ଲଢ଼ି ଏବେ ଆଇନ କଲେ, ଅମେ ମନ୍ଦିରକୁ ଯିବା, ସେ କଥା ଅମେ ପାସୋରି ଦେବା ନାହିଁ । ଗାଁ ଲୋକେ ତାଙ୍କର ସେଇ ପୁରୁଣା କାଳିଆ ନୀତି ଧରି ଆମକୁ ଛାଡ଼ୁ ନାହାନ୍ତି । ତାହାବୋଲି, ଅମେ ଅନ୍ୟପାର୍ଟି ବା ଅନ୍ୟ ଧର୍ମକୁ ଯିବା ଏକଥା ଆମପକ୍ଷରେ କେବେହେଲେ ଉଚିତ ନୁହେଁ । ମୁଁ ତ ଚିରକାଳ କଂଗ୍ରେସକୁ ମାନି ଆସିଛି । ଅନ୍ୟ ଲୋକ ଟଙ୍କା ପଇସା ବା ସୁଖ ସମ୍ପଦର ଲୋଭ ଦେଖାଇଲେ ବୋଲି ଅମେ କଂଗ୍ରେସ ଭିତରୁ ବାହାରି ପଡ଼ିବା ଏ କଥା କେବେ ହେବ ନାହିଁ । ଧର୍ମ ଭିତରୁ ବାହାରି ପଡ଼ିବା ଏକଥା କେବେ ହେବନାହିଁ । ଅମେ ଧର୍ମ ଛାଡ଼ିବା ନାହିଁ କି କଂଗ୍ରେସକୁ ଛାଡ଼ିବା ନାହିଁ ।

ପଗାଧର—ସେମନ୍ତୁ ଦେଖରେ ପାଦ୍ରି ସାହେବ ମୋ ପାଖକୁ ଟଙ୍କା ପଠେଇଛି; ମୋ ପିଲାକୁ ପାଠ ପଢ଼େଇବାକୁ । ମାଇ ସେ ଅଲଗ କଥା, ମୁଁ ନ କେବେ ପାସୋରି ପାରୁନାହିଁ, ମୁଁ ସେ ଧର୍ମ ନେବ ।

ବଦ୍ୟାଧର—ହଁରେ ଭାଇ, ଯାଙ୍କୁ କହ କହ, ଗୋଡ଼ହାତ ଧରି ନଦାଉଲ ଦୁଆରକୁ ନେଇ ନାହାନ୍ତି । ସେମାନେ ଆମକୁ ଡାକି ନେଇଛନ୍ତି । ଆମ ମନପ୍ରାଣ ସେଇ ଆଡ଼କୁ ଧାଇଁଲାଣି । ଅମେ ଆଉ ଏତେ ହେଲା ସହି ପାରିବୁ ନାହିଁ ।

କଲ୍ୟାଣ—ଆଜ୍ଞା, ତମର ବୁଦ୍ଧି ନାହିଁ, ଏଇ ଧର୍ମ ଛାଡ଼ିବାପାଇଁ ସାରା ବଙ୍ଗଳା ଦେଶରେ ହାହାକାର ପଡ଼ିଲାଣି । ନିଜର ଲୋକ ହେବେ ବୋଲି ଆମକୁ ତାଙ୍କ ଧର୍ମ ଭିତରେ ଭର୍ତ୍ତି କରି ଦେବାକୁ ଯତ୍ନ କରୁଛନ୍ତି । ସେ ଧର୍ମ ନ ନେଲେ ମାରୁଛନ୍ତି, ମାରୁଛନ୍ତି । ଏକଥାକୁ ଦେଖ ନା ଆଉ କଣ ଭାବିବଟି ? ବଙ୍ଗଳାରେ ସ୍ତ୍ରୀ ଲୋକଙ୍କ ଉପରେ ଯେଉଁ ଅତ୍ୟାଚାର ଚାଲିଗଲା, ଭାବିଲେ ଦେହର ରକ୍ତ ଛାଡ଼ି ଯାଉଛି । ଆମେ ହିନ୍ଦୁ ଚିରକାଳ ହିନ୍ଦୁ ରହିବା ! ହିନ୍ଦୁର ରକ୍ତ ଶିରା ପ୍ରଶିରାରେ ବହି ଯାଉଛି । ହିନ୍ଦୁପାଇଁ ପ୍ରାଣ ଦେବା ପଛକେ ଧର୍ମ ଛାଡ଼ିବା ନାହିଁ ।

ଇନ୍ଦ୍ର—କହିଯାଅ ଭାଇ ! ଅହୁରି କହି ଯାଅ ! କି ସୁନ୍ଦର ତୁମର ଯୁକ୍ତି । ଆମେ ହିନ୍ଦୁ, ହିନ୍ଦୁ ପାଇଁ ଦେବା ପ୍ରାଣ । ଆଜି ମୁଁ ଦୃଢ଼ କଣ୍ଠରେ କହିପାରେ, ତୁମେ ନାମରେ ହରିଜନ ହେଲେହେଁ, କୌଣସି ଶ୍ରେଷ୍ଠ ହିନ୍ଦୁଠାରୁ ନ୍ୟୁନ ନୁହଁ । ମୋର ବିଶ୍ୱାସ ତୁମେ ହିଁ ମାନିଛ ଗୀତାର ବାଣୀ । 'ସ୍ୱ ଧର୍ମେ ନିଧନ ଶ୍ରେୟଃ, ପରଧର୍ମ ଭୟାବହଃ ।' ଯାହା ବେଦ ସତ୍ୟବୋଲି, ଶ୍ରେଷ୍ଠ ବୋଲି ମାନି ନେଇଛେ, ତାହା କୌଣସି ଅତିବଡ଼ ପ୍ରଲୋଭନରେ ମଧ୍ୟ ତ୍ୟାଗ କରିବା ନାହିଁ । ଯେଉଁ ଜାତୀୟ ଅନୁଷ୍ଠାନ ଦ୍ୱାରା ଆଜି ଆମେ ପୃଥିବୀ ନିକଟରେ ପରିଚିତ ହୋଇଛେ, ଯେଉଁ କଂଗ୍ରେସ ଭାରତର ପୀଡ଼ିତ ଜନତା ନିମନ୍ତେ ପଚାଶ ବର୍ଷ ହେଲା ବ୍ରିଟିଶ ସରକାର ସଙ୍ଗେ ଲଢ଼େଇ କରି ତାହାର ପ୍ରବଳ ଦମନ ନୀତିର ପ୍ରଭାବରେ ବାରଂବାର ନିର୍ଜ୍ଜିତ ଯାତନା ଭୋଗକରି ଆସିଅଛି, ଯାହାର ପ୍ରଭାବରେ ଆଜି ବ୍ରିଟିଶ ସରକାର ଭାରତ ଛାଡ଼ି ପଳାୟନ କରିବାକୁ ବସିଛି, ସେହି କଂଗ୍ରେସ ଅନୁଯାୟୀ ପ୍ରତ୍ୟେକ ଭାରତୀୟ ଧର୍ମରେ କେତେବଡ଼ ମହାନ୍, କେତେବଡ଼

ସମ୍ମାନ୍, କେତେବେଳେ ଶାନ୍ତମାଳୀ ତାହା କେତେ ଲୋକର ଭୁମେହି ଏକା ଅନୁଭବ କରୁଛି କଲ୍ୟାଣୀ ।

କଲ୍ୟାଣୀ—ଭାଇମାନେ, ଆଜି ଶୁଭ ମୂହୂର୍ତ୍ତରେ ସମସ୍ତେ ବୋଲ 'ଜୟ ଭାରତମାତାର ଜୟ' । 'ଜୟ ନିର୍ଭୀକ ମହାକାଳ,' 'ଜୟ ଜନନୀ ଜନ୍ମଭୂମିର ଜୟ ।'

ଇନ୍ଦ୍ର—ଭାଇମାନେ, ଆଜି ତୁମେମାନେ ସମସ୍ତେ ଏକତ୍ରିତ ହୋଇ ଗୋପୀନାଥ ମନ୍ଦିର ନିକଟକୁ ଆସିବ । ବର୍ତ୍ତମାନ ମୁଁ ଯାଏ । ଅନ୍ୟସ୍ଥାନରେ ଲୋକଙ୍କୁ ବୁଝେଇ ଆଜି ସନ୍ଧ୍ୟାବେଳକୁ ମନ୍ଦିରକୁ ଆସିବ ।

କଲ୍ୟାଣୀ—ଆଉ ଆମ୍ଭମାନେ—ଜୟ ଇନ୍ଦ୍ରନାଥଙ୍କର ଜୟ ।

ଇନ୍ଦ୍ର—ନା ଭାଇ ଇନ୍ଦ୍ରନାଥଙ୍କ ଜୟ ନୁହେଁ, ବୋଲ ଜୟ ଭାରତର ଜୟ !

ସମସ୍ତେ—ଜୟ ଭାରତର ଜୟ

ଇନ୍ଦ୍ର—ଜୟ ! ଭାରତର ଜୟ !

[ ପ୍ରସ୍ଥାନ ]

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ--ମନ୍ଦିର ଦ୍ୱାର, କେତେକ ଲୋକ ଏକତ୍ର ଥିବା ।

[ ଅରୁଣ, ଶଙ୍କର, ଅପୂର୍ବ ପ୍ରବେଶ ]

ଅପୂର୍ବ—(ପ୍ରବେଶ) ବୋଲ ! 'ଜୟ ଦୁଃଖୀ ମୂଲିଆଙ୍କର ଜୟ । ଜୟ ଅସ୍ପୃଶ୍ୟର ଜୟ । ଜୟ ପୀଡ଼ିତର ଜୟ !'

ସମସ୍ତେ—(ସମ ସ୍ୱରରେ କହିବା )

## ଗୀତ

ସାମ୍ରାଜ୍ୟବାଦକୁ ଦିଅ ଧ୍ୱଂସ କରି
ଗରିବ ଭାଇ ବଞ୍ଚିବେ ନାହିଁ ଯିବେ ମରି ।
କଂଗ୍ରେସ ରାଜ୍ୟ ହେଲ ବୋଲି ତ ଗର୍ବେ ଭରି
ନ କର କିଛି ଦୁଲନ୍ତି ମନ୍ତ୍ରୀ ଗାଦି ଧରି ।
ଧନୀମାନଙ୍କ ସିନ୍ଧୁକ ସିନା ଦେଲେ ଭରି
ରହିଲେ ସେହୁ ଧୂର୍ତ୍ତେ ତୋଷାମୋଦ ଘର କରି ।
ଭୋଟ ମାଗିବାବେଳେ ଦେଉଥିଲେ ଉତ୍ତି
ଏବେ ଖେଳୁଛନ୍ତି ଖେଳ ଗୁର୍ଣ୍ଣି ପ୍ରାଣ ଧରି ।

ଅନୁଷ୍ଟୁ—ଭାଇମାନେ, ଆଜି ଆପଣମାନଙ୍କ ସମ୍ମୁଖରେ କହିବାକୁ ମୋର କୌଣସି ପ୍ରକାର କୁଣ୍ଠାଭାବ ନାହିଁ । ମୁଁ ଜାଣେ ତୁମେମାନେ ମତେ ବର୍ତ୍ତମାନ ମୂର୍ତ୍ତି ପ୍ରାଣରେ ବିଶ୍ୱାସ କରୁଛ । ପାଞ୍ଚବର୍ଷ ପୂର୍ବେ ମୁଁ ନେତଦେଲେ କଂଗ୍ରେସ ନେତାଙ୍କ ଅନୁସରଣ କରି ତୁମମାନଙ୍କ ସମ୍ମୁଖରେ ଠିଆ ହୋଇଥିଲି, ତୁମେମାନେ ହିଁ ମୋ ଅଙ୍ଗକୁ ଗୁହାଁ ନ ଥିଲ । ଆଜି ସେଇ ମୁଁ, ତଥାପି ତୁମେମାନେ ମୋର ପ୍ରତ୍ୟେକ କଥାକୁ ଅନ୍ତସାର ବୋଲି ମନେ କରି ମାନ କରି ଆସିଛ । ତୁମେମାନେ ବୁଝି ପାରୁଛ ବର୍ତ୍ତମାନ କଂଗ୍ରେସ ନୀତି [illegible] ହୋଇ ଯାଉଛି । ଆମର ଆଶା ଥିଲା ଏଥିରେ ଆମର ପୂର୍ଣ୍ଣ ସୌଭାଗ୍ୟର ଅଭିବୃଦ୍ଧି ହେବ । କିନ୍ତୁ ବର୍ତ୍ତମାନ ଦେଖା ଯାଉଛି ଅଭିବୃଦ୍ଧି ହେବା ଦୂରେ [illegible] ଦାରିଦ୍ର୍ୟ ଦିନକୁ ଦିନ [illegible] । ତୁମେ ସବୁ ଦେଖିବାକୁ [illegible], ଏହିସମାନଙ୍କରେ ଧନୀମାନେ କାଳାବଜାରି ଦ୍ୱାରା କୁବେର [illegible] ହେଉଛନ୍ତି । [illegible] ଲୋକ

ଆଜି ତୁମେମାନେ କିରାସିନି ଟୋପାଏ ନ ପାଇ ହୁଏ ତ ରୋଗୀ ଯନ୍ତ୍ରଣାକୁ ଧରି ଅନ୍ଧକାର ଘରେ କଷ୍ଟ ପାଉଛି—

ଶଙ୍କର—କାଳି କିରାସିନି କାହିଁକି । ସାମାନ୍ୟ ଲୁଣ ପେଡ଼ିର ଅଭାବରେ ଲୋକେ ଦାରୁଣ ଦୁର୍ଦ୍ଦଶା ଭୋଗ କରୁଛନ୍ତି । ପ୍ରତ୍ୟେକ ଦୋକାନଦାର ତାର ଲୁଣ ବ୍ୟବସାୟୀଙ୍କୁ ଇମିତ ଭାବରେ ଆରମ୍ଭ କରୁଛନ୍ତି ଯେ, କୌଣସି ଗରିବ ଲୋକ ଖଣ୍ଡିଏ ଗୁଦର ମୁଦ୍ରା ପାଇ ପାରୁ ନାହିଁ । ଯେ ସବୁ ଲାଭ ଧନୀମାନଙ୍କର ଭୋଗରେ । ମୁଁ ଯେତେଦୂର ଜାଣେ ପଲ୍ଲୀମାନଙ୍କରେ ଲୋକେ ଟଙ୍କା ଟିକିଏ ନ ପାଇ ରୋଗୀର ପଥ୍ୟରେ ଲୁଣ ବ୍ୟବହାର କରି ଚାଲୁଛନ୍ତି । ବର୍ତ୍ତମାନ ଗୋଟାଏ ଦୋହା ଉଠୁଛି କର୍ମଚାରୀଙ୍କ କାର୍ଯ୍ୟର ଆଲୋଚନା । ବିଚାରା କର୍ମଚାରୀଗଣ ଚିରକାଳ ସେଇ ଅଳ୍ପ ସ୍ୱଳ୍ପ ବେତନ ପାଇ ନିଜର କର୍ତ୍ତବ୍ୟରେ ତ୍ରୁଟି କରି ନାହାନ୍ତି । ସେମାନଙ୍କର ସୁଖ ଦୁଃଖ ସମ୍ବନ୍ଧରେ ତ କୌଣସି ଚିନ୍ତା କରାଯାଉ ନାହିଁ । କରାଯାଉଛି ସେମାନଙ୍କର କାର୍ଯ୍ୟର ସମାଲୋଚନା ।

ସନ୍ତୋଷ—ତାହାହେଲେ ତୁମେ ସବୁ ଆମମାନଙ୍କୁ କି ଉପଦେଶ ଦେଉଛ ?

ଅନନ୍ତ—ଉପଦେଶ ନୁହେଁ । ଅନୁରୋଧ କରୁଛୁ । ତୁମେ ଚାଷୀ, ମୂଲିଆ ସମସ୍ତେ ଏକତ୍ରିତ ହୋଇ ସରକାରଙ୍କ ନିକଟରେ ଜମିଦାରୀ ପ୍ରଥା ଲୋପ କରିବା ନିମନ୍ତେ ଦାବୀ କର । ଏଇ ଯେଉଁ ମିଲ ମାଲିକମାନେ, ମଠର ମାଲିକମାନେ, ତୁମମାନଙ୍କୁ ଚବିଶଘଣ୍ଟା ଖଟେଇ ତୁମକୁ ଉପଯୁକ୍ତ ମଜୁରି ଦେଉ ନାହାନ୍ତି, ସେମାନଙ୍କ ବିରୋଧରେ ଆରମ୍ଭ କରି ଅଭିଯାନ । ଆଜି ମୁଁ ମୁକ୍ତକଣ୍ଠରେ କହିବାକୁ ଚାହେଁ, ଯେଉଁ ଦେଶର ଶ୍ରମିକ

ଦୁଃଖୀ, ଯେଉଁ ଦେଶର ଶିକ୍ଷକ ପୀଡ଼ିତ, ଯେଉଁ ଦେଶର କୃଷୀ ଶୋଷିତ, ଯେଉଁ ଦେଶର କର୍ମଗୃହୀ ଅଲକ୍ଷିତ, ସେ ଦେଶର ରାଜା ସେ ଦେଶର ରାଜତ୍ୱ ଧ୍ୱଂସ ହେଉ ।

ଅରୁଣ—ମୁଁ କହେ, ଧ୍ୱଂସ ହେଉ ଧନୀକବାଦ । ଧ୍ୱଂସ ହେଉ ସାମ୍ରାଜ୍ୟବାଦ । ଧ୍ୱଂସ ହେଉ ଧନତାବାଦ । ଭାଇମାନେ ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ, ରୁଷ ଦେଶରେ ଶାସକଗଣ ଏ ଭଳି ନୀତି ପ୍ରବର୍ତ୍ତନ କରିଅଛନ୍ତି । 'ଯାହାର ଯେତିକି କାର୍ଯ୍ୟ ସେ ପାଇବ ସେତିକି' ଅର୍ଥାତ୍ ଯେ ଯେତିକି ଉଚ୍ଚ ଦରର କାର୍ଯ୍ୟ କରି ପାରିବ ସେ ତାର ପ୍ରତିଭାର ବିନିମୟରେ ସେତିକି ମୂଲ୍ୟ ପାଇବ । ସେ ଦେଶରେ ଧନୀ ଗରିବ ଭିତରେ କୌଣସି ପ୍ରଭେଦ ନାହିଁ । ସେ ଦେଶବାସୀ ଆଭିଜାତ୍ୟ ଅଭିମାନରେ କୌଣସି ବ୍ୟକ୍ତିଙ୍କୁ ହେୟ ଦୃଷ୍ଟିରେ ଦେଖନ୍ତି ନାହିଁ । ସେ ଦେଶର ଜନସାଧାରଣଙ୍କ ରକ୍ଷାକର୍ତ୍ତା ପାଳନକର୍ତ୍ତା ସରକାର । ସେ ଦେଶରେ ଯାହାର ବହୁ ସନ୍ତାନ ହେଲା, ସେ ମୁଣ୍ଡରେ ହାତ ଦେଇ ବସୁ ନାହିଁ । ପୁଣି ଯାହାର ସନ୍ତାନ ନାହିଁ ସେ ମୋର ସଞ୍ଚିତ ସମ୍ପତ୍ତି କିଏ ଭୋଗ କରିବ ବୋଲି ଚିନ୍ତା କରିବାକୁ ଅବସର ପାଏ ନାହିଁ । ବହୁ ସନ୍ତାନ ହେଲେ ସରକାର ନେଉଛନ୍ତି ତାର ଭାର । ନିଃସନ୍ତାନ ହେଲେ ଶେଷ ବୟସରେ ସରକାରୀ ହସ୍ପିଟାଲରେ ଲୋକ ପାଉଛନ୍ତି ସେବା । ପ୍ରତ୍ୟେକ ଦେଶବାସୀ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ସ୍ୱେଚ୍ଛାବିହାରୀ, ଚିରସୁଖୀ । ମୋର ଇଚ୍ଛା ଆମ ଦେଶରେ ସେହି ନୀତିର ପ୍ରତିଷ୍ଠା ହେଉ । ପୁଣି ଗରିବଙ୍କ ନାମରେ ଡିଲଟେଲା ନାହିଁ ବା ଚାଲୁ ।

ସମସ୍ତେ—ଜୟ, ଅରୁଣ ବାବୁଙ୍କ ଜୟ ।

ଚନ୍ଦ୍ରନାଥ—(ପ୍ରବେଶ) ଜୟ ସନାତନ ଧର୍ମର ଜୟ ।

ଅନୂର୍ଣ୍ଣ—ଆସନ୍ତୁ, ଆସନ୍ତୁ ।

ଚନ୍ଦ୍ରନାଥ—ଆପଣମାନଙ୍କୁ ମୁଁ ଆଜି ଗୋଟିଏ କଥା କହିବ । ଶୁଣ କହୁଛି । ଆପଣମାନେ ହେଲେ ବିଶ୍ୱାସୀ ଲୋକ । ବୁଝିଲେ, ହଁ, ଧର୍ମକୁ ବିଶ୍ୱାସ କରିବାହିଁ ହେଉଛି ଆପଣମାନଙ୍କର ଧର୍ମ । ଏବେ କଥା ବାହାରିଛି ଗାନ୍ଧୀ କହୁଛନ୍ତି—'ହାଡ଼ି ପାଣ ଦେଉଳକୁ ଯିବେ ।' ଆରେ, ହାଡ଼ିଟାକୁ ହରିଜନ ବୋଲି କହିଲେ ମଧ୍ୟ ସେ କଣ କେବେ ବ୍ରାହ୍ମଣ ହୋଇ ପାରିବ ? ତତେ ତୋ ମା ଜଗନ୍ନାଥ ବୋଲି ନାଁ ଦେଇଥିଲେ ତୁ କଣ ଜଗନ୍ନାଥ ହୋଇଯିବୁ ? ଲୋକେ ଯିନା ତତେ ଜଗନ୍ନାଥ ବୋଲି ଡାକିବେ, ତୁ ତ ଆଉ ଜଗନ୍ନାଥ ହୋଇ ପାରିବୁ ନାହିଁ, ସେଥିପାଇଁ ମୁଁ କହୁଛି ହାଡ଼ିଟା ଚିରକାଳ ହାଡ଼ି ହୋଇ ରହିବ । ହରିଜନ ବୋଲି କହିଦେଲେ ବ୍ରାହ୍ମଣ ହୋଇ ପାରିବ ନାହିଁ । ତୁମେ ମୋ କଥା ଶୁଣ, ସେଇ ଚିରକାଳର ସନାତନୀ ପ୍ରଥା ରକ୍ଷା କରିବା ନିମନ୍ତେ ସମସ୍ତେ ଏକମତ ହୋଇ ହାଡ଼ି ପାଣଗୁଡ଼ାକୁ ଦେଉଳକୁ ଯିବା କଥାରେ ବାରଣ କରିଦିଅ । (ପ୍ରସ୍ଥାନ)

ଅନୂର୍ଣ୍ଣ—ଅଚ୍ଛା ଭାଇମାନେ, ମୋ କହିବା କଥାରୁ ତୁମେମାନେ ନିଶ୍ଚୟ ସବୁ ବୁଝି ଯାଇଛ । ବର୍ତ୍ତମାନ ନାମ କରିବା ରହିଛି ବାକି । ତୁମେ ସମସ୍ତେ ଆମର ସ୍ୱାଧୀନ ଦଳର ଅନ୍ତର୍ଭୁକ୍ତ ହୋଇ ଯଥାରୀତି ସଭ୍ୟ ହେବ । ଅନ୍ୟମାନଙ୍କୁ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ କରାଇବ ।

ଶଙ୍କର—ଭାଇମାନେ, ଆମର ଏହି ଅପୂର୍ଣ୍ଣବାବୁ ତୁମମାନଙ୍କର କଲ୍ୟାଣ କାମନାରେ ଦିନରାତ ଯେପରି ଚିନ୍ତା କରୁଛନ୍ତି, ସେଥିପାଇଁ ଆମେମାନେ ତାହାଙ୍କଠାରେ ଋଣୀ । ଆଜି ତାଙ୍କର ବହୁ ମୂଲ୍ୟ ସମୟ ବ୍ୟୟ କରି ଆମ୍ଭମାନଙ୍କୁ ଯେଉଁ ଅମୂଲ୍ୟବାଣୀ ଶୁଣାଇଲେ, ସେଥିପାଇଁ ତୁମମାନଙ୍କ ପକ୍ଷରୁ ତାଙ୍କୁ ମୁଁ ଶତ ଧନ୍ୟବାଦ ଅର୍ପଣ କରୁଛି ।

ଅପୂର୍ଣ୍ଣ—ବର୍ତ୍ତମାନ ସଭା ଭଙ୍ଗ ହେଉ । (ପ୍ରସ୍ଥାନ)

ଗୁରୁଚରଣ—(ପ୍ରବେଶ) ଆଜି ତ କାହିଁକି ମୋ ଛାତିଟା ଧୁକୁ ଧୁକୁ ହେଉଛି । ଗାଁର ସେ ପାଖରେ ଗୋଟାଏ ସଭା ହେଉଥିଲା କି ଏଣେ ମନ୍ଦିର ପାଖରେ ହେଉଛି ଆଉ ଗୋଟାଏ ସଭା । ଗାନ୍ଧୀ ଦଳ, ସ୍ୱାଧୀନ ଦଳ, ଏ ଭିତରୁ କିଏ ଯେ ଦେଶହିତ କରୁଛି, ମୁଁ କିଛି ବୁଝି ପାରିଲି ନାହିଁ ।

ଶଙ୍କର—(ପ୍ରବେଶ) ନମସ୍କାର ଦୂଜାରୀ ମହାଶୟେ । ଭଲ ଅଛନ୍ତି ତ ?

ଗୁରୁ—ହଇ ହୋ, ଆପଣମାନଙ୍କର ଏହି ଯେଉଁ ସ୍ୱାଧୀନ ଦଳର ସଭାଟି ହେଲା ସେଥିରେ ତ ବଡ଼ ପାଟିକରି କହିଲେ,—ସାମ୍ରାଜ୍ୟବାଦ ଧ୍ୱଂସ ହେଉ, ପୁଞ୍ଜିବାଦ ଧ୍ୱଂସ ହେଉ, ଜମିଦାରୀ ପ୍ରଥା ଲୋପ ହେଉ, ପଇସା କାହା ହାତରେ ନ ରହୁ—ଇତ୍ୟାଦି ଇତ୍ୟାଦି । ମାନେ ଖୋଜିଲେ ତା ଭିତରୁ ବାହାରିବେ ଶହେକେ ଅନେଇଶ ଜଣ ବେପାରୀ, ରଣ କାରବାରୀ, ପୁଞ୍ଜିବାଦ ପ୍ରଭୃତି, ସୁଖବିଳାସ ବ୍ୟବହାର, ଗୁଡ଼ମାଂସ ପାୟସ ମିଷ୍ଟାନ୍ନ ଆହାର ଇତ୍ୟାଦି । ଶେଷରେ ଲୋକଙ୍କୁ ଏତିକି ବୁଝାଗଲା ନାହିଁ କାହିଁକି ଯେ, ଭଡ଼ାଘରେ ରହି ଭଡ଼ା ଦେବ ନାହିଁ । ଦୋକାନରୁ ଜିନିଷ ନେଇ ପଇସା ଦେବ ନାହିଁ ।

ଶଙ୍କର—କଣ ତୁମେ ଇମିତ କଥା କହୁଛ ପୂଜାରୀ ମହାଶୟେ ! ତୁମେ ଜାଣ ଆମେ ଦେଶରେ ଏଇ ବିରାଟ ଜନତାକୁ ଶୋଷଣବାଦରୁ ରକ୍ଷା କରିବା ନିମନ୍ତେ ଚେଷ୍ଟା ଚଳେଇଛୁ । ଅଜି ଆମ ଦେଶର ଅଣ୍ଡାରୁ ବଢାଯାଏ ସମସ୍ତେ ସେଇ ରୁଷିୟା ମାଟିର ପକ୍ଷପାତୀ ।

ଗୁରୁ—ରୁଷିୟା ଦେଶର କଥା ପଡ଼ିଗଲେ ତ ବାୟା ହୋଇ ଯାଉଛ । ଆମ ଦେଶ, ଆମ ମାଟି ବୋଲି ତମର ମମତା ନାହିଁ । ତମେ ଆଉ କରିବ କଣ, ଏଁ ? କାହିଁଗଲା ଆମର ସେ ମହାଭାରତ ଯୁଗର କଥା । ଆଉ ସେ ଗୀତା, ଭାଗବତ । ପରକୁ ଅନୁସରଣ କରିବାକୁ ଭଗବାନ ଆମକୁ ଦେଲେ ବୁଦ୍ଧି । (ପ୍ରସ୍ଥାନ)

ଶଙ୍କର—ବୁଢିଆ ପୂଜାରୀଟା କେଡ଼େ କେଡ଼େ ଯୁକ୍ତି କରୁଛି, ଏଁ । (ପ୍ରସ୍ଥାନ)

ଶରଧା—(ପ୍ରବେଶ) ରାତିରେ କିଛି ଖାଇ ନ ଥିଲ । ମୁଠେ ଖାଇ-କରି ଯା' ବୋଲି ବୋଲି ପଳେଇ ଆସିଲେ । ହଇ ହୋ, କୁଆଡ଼େ ଗଲମ ।

ଗୁରୁ—(ଅସ୍ପୁ ଅସ୍ପୁ) କୋକେଇ ବୋଉ କି ଲୋ । ହଁ, ହଁ, ଅସୁଛି । ସକାଳଠାରୁ ତ କଜିଆ କରୁଥିଲୁ, ଆସିଛୁ କୁଆଡ଼େ କହିଲୁ ?

ଶରଧା—ରାତିରୁ ଖାଇନାହିଁ; ଡେରି ହେଲଣି ଚାଲିଲ ଖାଇବ ।

ଗୁରୁ—ମୁଁ ନ ଖାଇଲେ ତୋର କଣ ଗଲା କି ? ହୁଁ—ମୋଠେ ତୋର ପ୍ରେମ ଅଛି । ଆଲୋ ପ୍ରେମ ତ ଅଛି ବୃଥାଠାରେ କଜିଆ କାହିଁକି କରୁଛୁ କହିଲୁ ?

ଶରଧା—ଚାଲ ଖାଇକରି ଆସିବ ।

ଗୁରୁ—ହଁ, ହଁ, ଜଣା ଗଲାଣି, ଚାଲେ ଚାଲ ଭାତ ବାଢୁଥା, ମୁଁ ଅସୁଛି ।

ଶରଧୀ—ଚଞ୍ଚଳ ଆସ । [ ପ୍ରସ୍ଥାନ ]

ଘୀରୁ—ଯାଏ, ଫୁଲ ଦ'ଟା ତୋଳି ଆଣି ମୁକ୍ତାଟା କରିଦିଏ ।

( ପ୍ରସ୍ଥାନ )

ଅମିତା—( ପ୍ରବେଶ କରି ଚିନ୍ତିତ ଭାବରେ ) ଲୋକ ସେବା କରିବାହିଁ ଆମର ପ୍ରଧାନ କାର୍ଯ୍ୟ । ବିଶେଷତଃ ଭାଇଙ୍କର ମାତହିଁ ମତେ ଗ୍ରହଣ କରିବାକୁ ହେବ । ନିର୍ଯ୍ୟାତିତ ଜନତାର ଉପକାର ସାଧନ ହିଁ ହେବ ଆମମାନଙ୍କର ପ୍ରଧାନ ବ୍ରତ ।

ଇନ୍ଦ୍ରନାଥ— [ପ୍ରବେଶ]

ଅମିତା—[ ମଥା ଟେକି ଶୀଘ୍ର ପ୍ରସ୍ଥାନ ]

ଇନ୍ଦ୍ରନାଥ—ସ୍ତ୍ରୀ ଲୋକଟିକୁ ଦେଖିଲେ ଶିକ୍ଷିତା ବୋଲି ଧାରଣା ହେଉଛି । କିନ୍ତୁ ମତେ ଦେଖି ଦେଖି ସେ ଗୁଚିଗଲେ କାହିଁକି ? ପୁରୁଷ ଦେଖିଲେ କୋଣରେ ପଶିବା ନୀତି ଆମ ଦେଶ ସ୍ତ୍ରୀମାନଙ୍କର ଆଜୁର ଯାଇ ନାହିଁ । ଯେତେ ଶିକ୍ଷିତା ହେଲେ ବି ସେତକ ଏମାନେ ଛାଡ଼ି ପାରିବେ ନାହିଁ । ହଁ, ଛାଡ଼ ସେ କଥା; ଏଇ ତ ସେଇ ମନ୍ଦିର । ଯାଏ ତେବେ, ହରିଜନଙ୍କୁ ନେଇ କାଲି ଏଇ ସ୍ଥାନକୁ ଆସିବାକୁ ହେବ ।

(ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ମନ୍ଦିର, ଘୁରୁଚରଣ ମୁକ୍ତାରଡ

[ନେପଥ୍ୟ] ଗୀତ

ଜୟହିନ୍ଦ୍ ଜୟହିନ୍ଦ୍ ଜୟହିନ୍ଦ୍ ବୋଲି
ଅତୀତର ଅପମାନ ଅଜି ସବୁ ଭୁଲି

ଅଦ୍ୟାଁ ହୋଇ କେହି ଜଣେ
ନ ରହୁ ଏହି ଭାରତ ଧାମେ
ଭୋଗ ଭୁଲ କର ତ୍ୟାଗ ତୁହିଁ ସବୁ ଗୋଲ ରେ ।
ଜନମି ଅଛେ ତ୍ୟାଗ ପାଇଁ
ଭୋଗ ଆମ ଭାଗ୍ୟେ ନାହିଁ
ଏ ଭାବନା କେଉଁଦିନ ମନ ମଧ୍ୟେ ଭାଲ ରେ ।

ଇନ୍ଦ୍ର—[ପ୍ରବେଶ] କରେ ମ୍ନୁ, କଣ ଲାଗିଛି । ପୂଜା ହେଲଣି ?

[ କଲ୍ୟାଣ ଏବଂ ଅନ୍ୟାନ୍ୟ ହରିଜନ, ଚନ୍ଦନ ଅର୍ଜ୍ଜୁନ ପ୍ରଭୃତି କର୍ମୀଗଣ ଇନ୍ଦ୍ରନାଥ ସହ ପ୍ରବେଶ ]

ଇନ୍ଦ୍ର—କହୋ ଏଣିକି କୁଆଡେ଼ ?

କଲ୍ୟାଣ—ଆମେ ଦେବ ଦର୍ଶନକୁ ଆସିଛୁ ।

ଇନ୍ଦ୍ର—ଏଁ, କଣ କହିଲ, ଦର୍ଶନକୁ ଆସିଛ !

ବିଦ୍ୟାଧର
କଲ୍ୟାଣ
ଧରାଧର } —ଆଜ୍ଞା ହଁ, ଆମେ ସବୁ ଦର୍ଶନକୁ ଆସିଛୁ ।

ଇନ୍ଦ୍ର—[ବିଦ୍ରୂପ କରି] ଆଜ୍ଞା ହଁ ! ଦର୍ଶନକୁ ଆସିଛୁ । କେତେ ସ୍ପଷ୍ଟବାଦୀ ଲୋକ ହୋ ତୁମେ । ତମର ସାତ ପୁରୁଷରୁ କେବେ ଦେବତା ଦର୍ଶନ କରିଥିଲ କି ।—ଏବେ ଆସିଛ ଦର୍ଶନ କରି ? ଆରେ ଏ ହେଲା ଦେବତା ମନ୍ଦିର, ଜାଣ ? ଆଉ ତୁମେମାନେ ହେଲ ଚଣ୍ଡାଳ । ଦେବତା ମନ୍ଦିରରେ ଚଣ୍ଡାଳ ପାଦ ପଡ଼ିଲେ ଦେବତା ତ ଅପବିତ୍ର ହେବେ ନାହିଁ; ଚଣ୍ଡାଳ ଭୋଗିବ ଧାତ ଜନ୍ମ ପାଏ କୁଷ୍ଠରୋଗ ।

ମନ୍ନୁ—ଆଉ କଣ ହୋ, ଦେବତାର କି ଯାତ ହୋଇ ଯିବ ହୋ, ଯାତ ହେବ ଏଇ ଚଣ୍ଡାଳମାନଙ୍କର ।

କଲ୍ୟାଣ—ଆମେ ଦର୍ଶନ କରି ଚାଲିଯିବୁ ।

ଚନ୍ଦ୍ର—ଏଁ କଣ କହିଲୁ ? ଆରେ, ଟିକିଏ ଉଭଣିକି ପା' ଭଲ ।

ବିଦ୍ୟାଧର—ଗୋସେଇଁ ! ତମେ ସବୁ ଚିରକାଳ ଆମକୁ ପଶୁ ପରି ଅଛୁଆଁ କରି ରଖିଥିଲ । ଆମ ମନରେ ସେଇ କଥା ବଡ଼ ଦୁଃଖ ଦେଉଛି । ଆମକୁ ଏଣେ ଖ୍ରୀଷ୍ଟାନ୍, ତେଣେ ମୁସଲମାନ୍, ସ୍ନେହ ଆଦର କରି ତାଙ୍କ ଧର୍ମରେ ଦୀକ୍ଷା ଦେବାକୁ ଡାକୁଛନ୍ତି । ଆମେ ଶୁଣୁ ନଥିଲୁ ଗାନ୍ଧୀଙ୍କ କଥାକୁ । ଏବେ ଗାନ୍ଧୀ ସରକାର ଆଇନ କରି ଦେଲେ । ତାରି ବଳରେ ଆମେ ଦେବତା ଦର୍ଶନ କରିବୁ ।

ଚନ୍ଦ୍ର—[ ବ୍ୟଙ୍ଗ କରି ] ଅହୋ ହୋ ! ଲାଜ ଲଜ୍ଜା ନାହିଁ କହିଲା ବେଳକୁ । କଂଗ୍ରେସ ସରକାର ଏମାନଙ୍କ ପାଇଁ ଆଇନ କରି ଦେଲେ । ଅରେ ସେସବୁ ଖାଲି ବାହେ କଥା, ଜାଣିଛ । ଆମର ଇଚ୍ଛା ହେଲେ ଆମେ ଅନୁମତି ଦେବୁ ନୋହିଲେ ନାହିଁ ।

କଲ୍ୟାଣ—ଆମକୁ ଟିକିଏ ଆଜ୍ଞା ହେଇ ଯାଉ । ସେ ଅଦ୍ଭୁତ ଆଇନ ହେଲାଣି । ଆପଣ ଆଉ ମନା କରୁଛନ୍ତି କାହିଁକି ?

ଚନ୍ଦ୍ର—ଅରେ ତମ କଂଗ୍ରେସ ସରକାର ଦେବତା ଦର୍ଶନ କରିବାକୁ ସିନା ଆଇନ କରିଦେଲେ । ତମକୁ ସବୁ ବ୍ରାହ୍ମଣ କରିଦେବାକୁ ଆଇନ କରୁନାହାନ୍ତି ?

ଗୁରୁ—ଆଉ କଣ ହେ । ତମକୁ ସବୁ ବ୍ରାହ୍ମଣ କରି ଦେଉନାହାନ୍ତି ? ଆରେ ଅଜାଙ୍କ ଚାଲିଯାଇଥାଅ । ବଜାରରୁ ପଇତା ଗୋଟାଏ ଗୋଟାଏ କିଣି କାନ୍ଧରେ ପକେଇ ଦେଇ ଚାଲିଆସ । ବୁଝିଲ ?

ଇନ୍ଦ୍ର—ମହାଶୟେ, ନିଜକୁ ସଂଯତ କରି କଥା କହନ୍ତୁ । ମହାତ୍ମା ଭାରତର ଧର୍ମହାନି କରାଉ ନାହାନ୍ତି । ବିଧର୍ମୀର କବଳରୁ ରକ୍ଷା କରିଛନ୍ତି ଭାରତକୁ । ଆପଣ ହାସ୍ୟାସ୍ପଦ କଥା କହୁଛନ୍ତି, ଗାନ୍ଧିଜୀ କୌଣସି କାଳେ ରାଜା ହେବା କଳ୍ପନା କରନ୍ତି ନାହିଁ ।

ଚନ୍ଦ୍ର—ହିଁ, ହିଁ, ହେଲା ! ହେଲା ! ବୁଝିଲୁ ଆଉ କଣ । ଭାରତଟାକୁ ଏକାଥରକେ ଉଦ୍ଧର ଧରିଛନ୍ତି ? ଏଇ ତ ତାର ପ୍ରଭାବ ଦେଖାଦେଲାଣି ।

ପରାଶର—ଗୋସେଇଁ । ଆମକୁ ଦର୍ଶନକୁ ଛାଡ଼ନ୍ତୁ ନା । ଦେଖିବା ସାର ଫଳ ଭଲ ହେବ ନାହିଁଟି ?

ଚନ୍ଦ୍ର—କିରେ ଚଣ୍ଡାଳ ! ଭାରି ତ ଭୟ ଦେଖାଉଛୁ ! ଆରେ ଏ ତ କଳିଯୁଗ ଭଣ୍ଡ ଆକାର ଧରିଲା । କାହିଁ ଗଲା ସେ ଭଟ୍ଟୋଚାରିଆ ଯୁଗ । ଗାନ୍ଧୀ ଯୁଗରେ ଏହା ପ୍ରାପ୍ତି ଥିଲା । "ସବେଁ ହୋଇବେ ଏକାକାର, ନ ଥିବ ବେଦର ବିଚାର ।" ଏଁ, ଏବେ ଗୋମାଂସ ଭୋଜୀ ଚଣ୍ଡାଳ ଆସି କହୁଛନ୍ତି, ଆମେ ଦେବତା ଦର୍ଶନ କରିବୁ । ଅତେ ନୁହଁ, ମୁଁ ଯାଉଛି । ମୋର ଗର୍ବରେ, ଲକ୍ଷଣ ତ୍ରିପାଠୀଙ୍କୁ କହିଦେବି । (ପ୍ରସ୍ଥାନ)

ଗୁରୁ—ଦେଖନ୍ତୁ ଆଜ୍ଞା, ଏ ମହାଶୟ ଗଲେଣି ଗାଁରେ ଘୋଟାଏ ଗୋଳମାଳ ଆରମ୍ଭ ହେବ । ଆପଣ ଟିକିଏ ଦର୍ଶନ କରି ଚାଲିଯାଆନ୍ତୁ ।

ଇନ୍ଦ୍ର—(ଫେରି) ଏମାନେ ନ ଗଲେ ମୁଁ ଯିବି ନାହିଁ ।

କଲ୍ୟାଣ—ଚାଲନ୍ତୁ ଆଜ୍ଞା, ଭଗବାନଙ୍କର ଇଚ୍ଛା ହେଲେ ଦଳେ ଦଳେ ଦର୍ଶନ ଦେବେ ।

ଚନ୍ଦ୍ର—କିହୋ ! ତୁମେ ପରା ନେତା । ଦୋଷାଜ୍ଞାନ ଟିକେ ମଧ୍ୟ ହରେଇ ବସିଲ କିହୋ । ହଁ, ହଁ, ସେ ଜ୍ଞାନ ଟିକ ଆସିବ କୁଆଡ଼ୁ ? ଶରୀରରେ ବ୍ରାହ୍ମଣ ରକ୍ତ ଟୋପାଏ ଥିଲେ ତ ? ଲଜ୍ଜା ଲଜ୍ଜା ନାହିଁ । ଆହୁରି କହୁଛ ଅମେ ବଦ୍ୟାବନ୍ତ । ବ୍ରାହ୍ମଣ ନ ହେଲ ବୋଲି କଉଣି ପୁଅ ତ ହୋଇଥିବ । ହାଡ଼ିପାଣ ଗୁଡ଼ାଏ ଧରି ଦେଉଳ ଦୁଆରକୁ ଆସିଛ ଯାହା ।

ଗୁରୁ—ଆଜ୍ଞା, ମୁଁ କହୁଛି ଜ୍ଞାନରେ ନ ହେଲେ ବି ବୟସରେ ତ ବଡ଼ । ଆପଣ ଆସିଛନ୍ତି, ଆସନ୍ତୁ ଗୋପୀନାଥଙ୍କୁ ଦର୍ଶନ କରିବେ । ଭୋଗରେ ଲାଗିବ ଗୁରୁପଇସା ଦକ୍ଷିଣା । ବୁଝିଲେ, ଆଜ୍ଞା ଏମାନଙ୍କୁ ବିଦାୟ କରିଦିଅନ୍ତୁ । ଆସନ୍ତୁ ଟିକିଏ ଦେଉଳ ଭିତରକୁ ।

ଚନ୍ଦ୍ର—କିରେ ଗୁରୁ । ତୋର ମଧ୍ୟ କଣ ଚିତ୍ତ ଭ୍ରମ ହେଲା ନା କଣ । ହାଡ଼ି ଛୁଆଁରେ ଯିବେ ଦେଉଳ ଭିତରକୁ ।

ଇନ୍ଦ୍ର—ଆପଣ ଜାଣନ୍ତି, ରାମଚନ୍ଦ୍ର ଶବରୀ ହାତରୁ ଉଚ୍ଛିଷ୍ଟ ବଦ୍ରୀ ଖାଇଥିଲେ । ଆପଣମାନେ କେବଳ ଏଇ ଛୁଆଁ ଅଛୁଆଁକୁ ଧରି ନିଜେ ହିଁ ଅଛୁଆଁ ହୋଇ ରହିଯାଉଛନ୍ତି ।

ଚନ୍ଦ୍ର—ଆହା ହା ! କି ଧର୍ମଜ୍ଞାନ ! ରାମଙ୍କର ଉଦାହରଣ ଦିଆଯାଉଛି । ରାମ ଆଉ ଏ । ଅରେ ଏ ହାଡ଼ି ପାଣ ଦଳ ଯାଅ ଏଠୁ ।

ଇନ୍ଦ୍ର—ଜାଣନ୍ତି ମହାଶୟେ । ମହାତ୍ମା ଗାନ୍ଧୀ କଣ କହୁଛନ୍ତି ।

ଚନ୍ଦ୍ର—ଆହା ହା ! ଗାନ୍ଧୀ ତ ମୋଟାଏ ମହାତ୍ମା ହୋଇଗଲା । ଆଜି କାଲି କି ? ଅରେ ବଣିଆପୁଅ ବେପାର କରୁଥାନ୍ତା । କଣ ସେ କଥା କୁଆଡ଼େ ଗଲା । ଏଠି ମହାତ୍ମା ବନେଇ ବସିଛନ୍ତି, କହୁଛନ୍ତି ଭାରତର ରାଜା ହେବ । ରାଜ୍ୟଟାକୁ, ଆମର ଏ ସନାତନ ଧର୍ମକୁ ଛାରଖାର କରିଦେଲା

ଇନ୍ଦ୍ର—ମହାଶୟେ, ନିଜକୁ ସଂଯତ କରି କଥା କହନ୍ତୁ । ମହାତ୍ମା ଭାରତର ଧର୍ମହାନି କେବେହେଁ ନାହାନ୍ତି । ବୀଦ୍ଧୀର କବଳରୁ ରକ୍ଷା କରିଛନ୍ତି ଭାରତକୁ । ଆପଣ ହାସ୍ୟାସ୍ପଦ କଥା କହୁଛନ୍ତି, ଗାନ୍ଧିଜୀ କୌଣସି କାଳେ ରାଜା ହେବା କଳ୍ପନା କରନ୍ତି ନାହିଁ ।

ଚନ୍ଦ୍ର—ହଁ, ହଁ, ହେଲା ! ହେଲା ! ନୂଆ ଅଜ କଥା । ଭାରତଟାକୁ ଏକାଥରକେ ଉଦ୍ଧାର ଧରିଛନ୍ତି ? ଏଇ ତ ତାର ପ୍ରଭାବ ଦେଖାଦେଲାଣି ।

ପରାଶର—ଗୋସେଇଁ । ଆମକୁ ଦର୍ଶନକୁ ଛାଡ଼ୁ ନ । ଦେଖିବ ସ୍ୱାର ଫଳ ଭଲ ହେବ ନାହିଁଟି ?

ଚନ୍ଦ୍ର—କିରେ ଚଣ୍ଡାଳ ! ଭାରି ତ ଭୟ ଦେଖାଉଛୁ । ଆରେ ଏ ତ କଳିଯୁଗ ଭିନ୍ନ ଆକାର ଧରିଲା । କାହିଁଗଲା ସେ ଭବିଷ୍ୟୋତ୍ତର ଯୁଗ । ଗାନ୍ଧୀ ଯୁଗରେ ଏହା ପ୍ରାପ୍ତି ଥିଲା । "ସର୍ବେ ହୋଇବେ ଏକାକାର, ନ ଥିବ ବେଦର ବିଚାର ।" ଏଁ, ଏବେ ଗୋମାଂସ ଭୋଜୀ ଚଣ୍ଡାଳ ଆସି କହୁଛି, ଆମ ଦେବତା ଦର୍ଶନ କରିବୁ । ଅରେ ଗୁରୁ, ମୁଁ ଯାଉଛି । ଗାଁର ଉଦ୍ଧର ଦୂଷଣ ଦିଗପତିଙ୍କୁ କହିଦେବ । ( ପ୍ରସ୍ଥାନ )

ଗୁରୁ—ଦେଖନ୍ତୁ ଆଜ୍ଞା, ଏ ମହାଶୟ ଗଲେଣି ଗାଁରେ ଗୋଟାଏ ଗୋଳମାଳ ଆରମ୍ଭ ହେବ । ଆପଣ ଟିକିଏ ଦର୍ଶନ କରି ଚାଲିଯାଆନ୍ତୁ ।

ଇନ୍ଦ୍ର—(ଫେରି) ଏମାନେ ନ ଗଲେ ମୁଁ ଯିବି ନାହିଁ ।

କଲ୍ୟାଣ—ଚାଲନ୍ତୁ ଆଜ୍ଞା, ଭଗବାନଙ୍କର ଇଚ୍ଛା ହେଲେ ବାହାରେ ଦର୍ଶନ ଦେବେ ।

ଇନ୍ଦ୍ର—ଅର୍ଜ୍ଜୁନ, କିରଣ ତୁମେ ସବୁ ଯାଇ ଗାଁରେ ଗୋଟାଏ ସଭା କରିବା ଆୟୋଜନ କର, ମୁଁ ପଛରେ ଯାଉଛି । କହ, ଜୟ ଭାରତର ଜୟ ।

ସମସ୍ତେ—ଜୟ ଭାରତର ଜୟ । ଜୟ ତିରଙ୍ଗ ପତାକାର ଜୟ ।

(ପ୍ରସ୍ଥାନ)

ଗୁରୁ—ଆସନ୍ତୁ ଅଜ୍ଞା, ଡେରି ହେଲାଣି, ସେଆଡ଼େ ନୋକେଇ ଦୋଉ ଅନେଇ ରହିଥିବ । ବୁଝିଲେ, ଆମ ଶରଧା, ଅଜ୍ଞା ବାହାରେ ମୁହିଁ ଝିଅହୁଏ ସିନା ଭିତରେ ଭିତରେ ଭାରି ସ୍ନେହ । ଭାତ ବାଢ଼ିଦେଇ ବସିଥିବ ।

ଇନ୍ଦ୍ର—ଆପଣ ଯାଆନ୍ତୁ । ଆପଣଙ୍କର ମନ୍ଦିରଦ୍ୱାର ବନ୍ଦ କରି ଦିଅନ୍ତୁ, ମୁଁ ଏହି ପବିତ୍ର ସ୍ଥାନରେ ଟିକିଏ ବିଶ୍ରାମ ନେଇ ମଟର ଯିବି ।

ଗୁରୁ—( ମୁଖ ଭଙ୍ଗି କରି ) ସହଜକଲେକ ନୁହେଁ । ସହଜକଲେକ ନୁହେଁ । ( ପ୍ରସ୍ଥାନ )

ଇନ୍ଦ୍ର—କଣ କରିବି । କାହାର ସହାୟତା ମାଗିବି । ଜଣେ ବିଦ୍ୱାନ ବ୍ରାହ୍ମଣ ଯେ କି ଭଗବାନ କ'ଣ ଜାଣେ, ସେ କହୁଛି ମନ୍ଦିରରେ ଅଛନ୍ତି ଦେବତା !

ଅମିତା—( ପ୍ରବେଶ )--( ପୁଣି ପ୍ରସ୍ଥାନ ଉଦ୍ୟତ )

ଇନ୍ଦ୍ର—ଆପଣ କଣ ଏଇ ମନ୍ଦିର ଭିତରେ ରହନ୍ତି ?

ଅମିତା—ଅପଣ କଣ—

ଇନ୍ଦ୍ର—ମୁଁ ଜଣେ କଂଗ୍ରେସ କର୍ମୀ ।

ଅମିତା—ଆପଣଙ୍କର ନାମ ?

ଇନ୍ଦ୍ର—ଧନ୍ୟବାଦ, ଓଡ଼ିଆ ଝିଅର ଅନ୍ତତଃ ଏତିକି ସାହସ ହେଲାଣି ଯେ ସେ କୌଣସି ଅପରିଚିତ ଲୋକଙ୍କୁ ନାମ ପଚାରି ପାରିବ ।

ତେବେ ଓଡ଼ିଆ ଦେଶର ଲୋକ ତ ନାମ ଉପରେ ଜୋର ଦେଇ ନ ଥାନ୍ତି । ନାମ ମୋର ଇନ୍ଦ୍ରନାଥ । ଆପଣ ତ ନିଜ ପରିଚୟ ଦେଲେ ନାହିଁ ।

ଅମିତା—ଅମୂର୍ତ୍ତି ବାବୁଙ୍କୁ ଆପଣ ଜାଣନ୍ତି ବୋଧହୁଏ, ତାଙ୍କର ଭଉଣୀ ମୁଁ, ମୋ ନାଁ ଅମିତା ।

ଇନ୍ଦ୍ର—ତାହାହେଲେ ଆପଣ ଜଣେ ନେତ୍ରୀ ।

ଅମିତା—ଆମେ ତ ଆଜ ଆପଣମାନଙ୍କ ପରି ଅଧିକାର ଆସନରେ ବସି ନାହୁଁ ।

ଇନ୍ଦ୍ର—ଯେଉଁ ଅଧିକାର ମୋହ ହିଁ ସେବାକାର୍ଯ୍ୟରେ ଅନ୍ତରାୟ ଆଣି ଦେଉଛି । ଛାଡ଼ନ୍ତୁ ସେ କଥା, ବର୍ତ୍ତମାନ ହରିଜନଙ୍କ ମନ୍ଦିର ପ୍ରବେଶ ସମ୍ବନ୍ଧରେ ଆପଣ ମୋତେ କେତେଦୂର ସହାନୁଭୂତି କରିବେ କହନ୍ତୁ ତ ।

ଅମିତା—ଆପଣଙ୍କୁ ମୁଁ ଗୋଟାଏ ବୁଣି କଣ ସାହାଯ୍ୟ କରି ପାରିବି ।

ଇନ୍ଦ୍ର—ଆମମାନଙ୍କର ଗୋଷ୍ଠୀ ଭିନ୍ନ ହେଲେ ସୁଦ୍ଧା ଦେଶ ସେବା ତ ଏକମାତ୍ର ଲକ୍ଷ୍ୟ । ସେ ସମ୍ବନ୍ଧରେ ଅନ୍ତତଃ ଆପଣମାନେ ଆମ ସହିତ ଆନ୍ତରିକତା ରଖିବା ଉଚିତ । ଆଚ୍ଛା, ଆପଣ ଆମମାନଙ୍କୁ କଣ ବୋଲି ଭାବନ୍ତି ।

ଅମିତା—( ନତମୁଖରେ ) ଆପଣମାନଙ୍କୁ ଆମେ ଅତ୍ୟନ୍ତ କ୍ଷମତା ପ୍ରିୟ ଲୋକ ବୋଲି ମନେକରୁ ।

ଇନ୍ଦ୍ର—[ ହସି ] ତାହାହେଲେ ତ ଏକାନ୍ତ ଅନ୍ୟାୟ ଧାରଣା କରିଛନ୍ତି । ବର୍ତ୍ତମାନ ଦେଶର ଏଇ ଭୀଷଣ ପରିସ୍ଥିତି ବେଳେ ଆପଣମାନେ ଭୁଲ ଧାରଣାର ବଶବର୍ତ୍ତୀ ହୋଇ ଯଦି ବିଭ୍ରାଟ ଘଟାନ୍ତି ତେବେ ତ କୌଣସି କାର୍ଯ୍ୟ ସମ୍ଭବପର ହୋଇ ପାରିବ ନାହିଁ ।

ଅମିତା—ଆପଣମାନେ ସୁଯୋଗ ଦେଖି ବନ୍ଧୁଙ୍କୁ ଅନ୍ତର କରିଦେଇ ପାରନ୍ତି । ସେଥିପାଇଁ ମୁଁ ଆପଣମାନଙ୍କୁ ବନ୍ଧୁଦ୍ରୋହୀ ବୋଲି କହେ ।

ଇନ୍ଦ୍ର—ଆମେ ତ ବନ୍ଧୁଦ୍ରୋହୀ ନୋହୁ । ଯେଉଁମାନେ ଆମକୁ ତାହା କହନ୍ତି ସେମାନେ କେବଳ ବନ୍ଧୁଦ୍ରୋହୀ ନୁହନ୍ତି, ଦେଶଦ୍ରୋହୀ ମଧ୍ୟ । କୌଣସି ବନ୍ଧୁ ଯଦି ଆମ ବନ୍ଧୁତ୍ୱର ମର୍ଯ୍ୟାଦା ନ ରଖେ ସେଥିପାଇଁ କରାଯିବ କଣ ? ହଁ—ଛାଡନ୍ତୁ ସେ କଥା । ହରିଜନଙ୍କ କଥା କଣ କରାଯିବ କହନ୍ତୁ । ବର୍ତ୍ତମାନ ଯେ କୌଣସି ମତେ 'ଗଠନମୂଳକ ସମାଲୋଚନା କରିବା ଉଚିତ ।

ଅମିତା—ମୁଁ ତ ଭାବୁଛି, ଏଷଣି ସେମାନଙ୍କର ମନ୍ଦିର ପ୍ରବେଶ କରିବାର କୌଣସି ଆବଶ୍ୟକତା ନାହିଁ । ପ୍ରଥମେ ସେମାନଙ୍କର ଆର୍ଥିକ ସ୍ୱଚ୍ଛଳତା ଆଣି ଦିଅନ୍ତୁ, ପରେ ସେମାନଙ୍କର ମନ୍ଦିର ପ୍ରବେଶ କଥା ଚିନ୍ତା କରିବେ ।

ଇନ୍ଦ୍ର—ମୁଁ କହୁଛି ପ୍ରଥମେ ସେମାନେ ଆମ ସହିତ ମିଳାମିଶା କରି ଆମର ପରି ସଦାଚାରୀ ହୋଇ ଯାଆନ୍ତୁ । ପରେ ଆପେ ଆପେ ଆର୍ଥିକ ସ୍ୱଚ୍ଛଳତା ଆସିଯିବ ।

ଅମିତା—ଆପଣମାନେ ଖାଇ ପିନ୍ଧି ସୁଖ ସ୍ୱଚ୍ଛନ୍ଦରେ ରାଜପ୍ରାସାଦରେ ବସିଥାନ୍ତି । ଆଉ ସେ ବିଚରା ଗୁହାଳ ପଶୁ ପକ୍ଷୀଠୁଁ ଅଧମ ହୀନ ହୋଇ ପଡ଼ିଥାନ୍ତି, ସେଇ ଦୁର୍ଗନ୍ଧ ମୟ ରାଜ୍ୟରେ । ଆପଣ-ମାନେ ସମୟେ ସମୟେ ସାମାନ୍ୟ ଅନୁଗ୍ରହ ଦେଖାଇ, ଦେଉଳ ଦୁଆରେ ସେମାନଙ୍କୁ ଠିଆ କରେଇ ଦେଲେ, ସେଥିରେ ସେମାନଙ୍କର ଲାଭ କଣ ହେବ କହନ୍ତୁ ତ ?

ଇନ୍ଦ୍ର—ଆପଣ ଭୁଲ ବୁଝୁଛନ୍ତି। ଅପଣ ଯେଉଁ ଜନସଙ୍ଘଙ୍କୁ ଅନୁଗ୍ରହ ବୋଲି କହୁଲେ ତାହା ଅନୁଗ୍ରହ ନୁହେଁ, ଅଦର। ଅମେ ଗୃହୁଁ ସେମାନେ ଅମ ସହିତ ମିଳାମିଶି ସକଳ ପ୍ରକାର ଗୃହକାର୍ଯ୍ୟରେ ସ୍ଥାନ ପାଇବେ, ସୁସ୍ଥ ହେବେ, ଶିକ୍ଷିତ ହେବେ। ତାହା ନ କରି ଯଦି କେବଳ ତାଙ୍କର ଟଙ୍କା ପଇସା ଦରମା ଦେଖାଯାଏ, ତେବେ ସେମାନେ ତାଙ୍କର ସେଇ ଚିରକାଳର ଅଭ୍ୟାସ ବଳରେ ପଇସାତକ ମଦ ଭାଟିରେ ଢାଳିଦେଇ ଆସିବେ। ଶୋଚନୀୟ ଦଶା ଘୁଞ୍ଚିବ ନାହିଁ କୌଣସି କାଳେ।

ଅମିତା—ଆମେ ବି ଯୁକ୍ତି କରିପାରୁ ଠିକ୍ ଆପଣଙ୍କ ପରି। ସେମାନେ ଯେଉଁଦିନ ଖାଇ ପିନ୍ଧି ରହିବେ ଦଳେ ବଳେ ଠିକ ସେଇ ମନୋଭାବ କାଳକ୍ରମେ ହୋଇଯିବ ଯେ।

ଇନ୍ଦ୍ର—ସେବକ ଅମେ, ସେବା କରିବା ଉଦ୍ଦେଶ୍ୟରେ କଥା କହୁ, ଅପଣମାନେ ହେଲେ ତାର୍କିକ, ତର୍କ କରି ଦେଶକୁ ନେବେ ଧ୍ୱଂସ ପଥରେ, କାର୍ଯ୍ୟ କରି ଅମ ମୁଣ୍ଡ ଘୁରିଯାଏ; ତେଣୁ ବୃଥା ତର୍କ କରିବାକୁ ଆମେ ସମୟ ପାଉ ନା।

ଅମିତା—ଆପଣ ଗାଳିଦେବା ଆରମ୍ଭ କଲେଣି।

ଇନ୍ଦ୍ର—ଗାଳି ଦେଇ ସ୍ୱାଧୀନ ଦଳର ଶକ୍ତି ହ୍ରାସ କରି ଦେବାକୁ ମସ୍ ଆସିଛନ୍ତି ?

ଅମିତା—ହ୍ରାସ ବୃଦ୍ଧିର ମାପକାଠି ଆପଣ ରଖିଛନ୍ତି ନା କଣ ?

ଇନ୍ଦ୍ର—ଅଚ୍ଛା ରହନ୍ତୁ, ଯାହା ଅଲୋଚନା ହୋଇ ଯାଉଛି କଳିଆ ବୋଲି ମନେ କରିବେ ନାହିଁ। କଥାରେ କଳିଆ ଘଟିଯିବ ବୋଲି ଭୟ ହେଉଛି। ଆପଣ ବୋଧହୁଏ ଦେବତା ଦର୍ଶନ ଉଦ୍ଦେଶ୍ୟରେ ବରଦର ଏଠିକି ଆସନ୍ତି, ତାହାହେଲେ ଦେଖା ହେବ ନିଶ୍ଚୟ। ନମସ୍ତେ।

ଅମିତା—ନମସ୍ତେ। [ ଦୁହେଁ ଦୁଇ ଦିଗରେ ପ୍ରସ୍ଥାନ ]

# ଚତୁର୍ଥ ଦୃଶ୍ୟ

## ସ୍ଥାନ—ଦାର କିଶୋରଙ୍କ ଘର

ଦୀର— [ପ୍ରବେଶ] କଣ କରିବି, ଏଣେ କଂଗ୍ରେସ ମାଗୁଛନ୍ତି ହଜାରେ ଟଙ୍କା ଚାନ୍ଦା, ତେଣେ ମିଲ୍ ବନ୍ଦ କରିବା ସୂଚନା ଦେଖା ଗଲାଣି । କରେ କଣ, କାହାକୁ କହିବି, ଆରେ ଟଙ୍କା ରଖି କରିବି କଣ, ଏଣେ ଚିତ୍କାର ପଡ଼ୁଛନ୍ତି ଜମିଦାରୀ ପ୍ରଥା ଧ୍ୱଂସ ହେଉ, ପୁଞ୍ଜିବାଦ ଲୋପ ହେଉ, ସେଥିରେ ମୋର ଯାଏ ଆସେ କଣ ! କୁଞ୍ଜ ବାରିକ କରିଛନ୍ତି ପାନ ଦୋକାନ, ଉପାର୍ଜନ ତାର ଦୈନିକ ଦୁଇଟଙ୍କା, ଖାଇ ପିଇ ସୁଖରେ ଶୋଉଛନ୍ତି ସେ, ପାହାନ୍ତିଆରୁ ଉଠି ଗାଉଛନ୍ତି ଭଜନ । ମୁଁ କରୁଛି ଦିନରାତି ଚିନ୍ତା, କେଉଁଠୁ ଟଙ୍କା ଆସିଲା, କେଉଁଠୁ ଧାନ ଆସିଲା, କେତେ ଟଙ୍କା ଜମା ରହିଲା । ମୋର ଏଥିରେ ଦରକାର କଣ !

ଗୁରୁ—(ପ୍ରବେଶ) ନମସ୍କାର ଭାଇନା । [ପଛକୁ ଚାହିଁ] ଆସେ, ନୋକେଇ ବୋଉ ଆସିଛନ୍ତି ଯେ ।

ଶରଧା—[ପ୍ରବେଶ କରି] ନାଣୀ ଥିଲା ଦିନେ ସିନା ଜଞ୍ଜାଳ କରି ତାଠୁ ମାଗି ନେଉଥିଲି, ନୋକେଇ ମୋର ବ୍ରତ ହବ । ତମର ସାହାଯ୍ୟ ନ ହେଲେ କିଛି ହୋଇ ପାରିବ ନାହିଁ । ଏ ତ ଘରର କୋଉ କଥା ଦେଖୁ ନାହାନ୍ତି । ରଧା ପଣ୍ଡିତ କର୍ମ କରିବେ, ପାଞ୍ଚ ଯୋଡ଼ାଟିଏ ଦରକାର ।

ଗୁରୁ—ହେଉ ହେଉ, ପରେ ସେ ସବୁ ଦେଖିବା; ଆଗେ ଭିତରକୁ ଯା ।'

ଶରଧା—ହଁ ଯାଉଛ ଯେ ତମେ ଆଉ ସେ ହାଡ଼ ପାଣ ଗୁଡ଼ାକୁ ଦେଉଳରେ ପୂରେଇବ ନାହିଁ । [ ପ୍ରସ୍ଥାନ ]

ଦୀର—ବୁଝିଲ ପଣ୍ଡେ, ମୁଁ ମଧ ଗୋଟାଏ ସିଦ୍ଧାନ୍ତରେ ପହଞ୍ଚି ସାରିଛି ।

ନୃସିଂ—କଣ ଆଉ କେତେହଜାର ଟଙ୍କା ବ୍ୟାଙ୍କରେ ରଖିବା କଥାରେ ନା ?

ଦୀର—ନାହିଁ ହୋ, ସେ ଟଙ୍କା ରଖିବା ଆଶା ଗଲାଣି । ଭାବୁଛି, ଲଳିତାକୁ ସେଇ ଅପୂର୍ବ ବାବୁଙ୍କ ସାଙ୍ଗରେ ବିବାହ କରେଇ ଦେଇ ନିଶ୍ଚିନ୍ତ ହୋଇ ଯିବ । ଆଉ ଯଷ ଗାଳି ଶୁଣି ପାରିବ ନାହିଁ । ଦୟାକରି ତମେ ଟିକିଏ ବନ୍ଦୋବସ୍ତ ଯଦ କରି ଦିଅନ୍ତ ।

ନୃସିଂ—ତାଙ୍କ ମା'ଙ୍କୁ କହିଲେ ସବୁ ହୋଇ ଯିବ ଯେ, ପୁଞ୍ଜିବାଦୀ ହେବାକୁ ସେ ନିଜେ ହଁ କରିବେ କି ନାହିଁ—।

ଦୀର—ପୁଞ୍ଜିବାଦୀ କଣ ? ତାଙ୍କ ଇଚ୍ଛାହେଲେ, ମଜୁରିଆଙ୍କୁ ସୁବିଧା ଦେଇ ଭଲେ ଆଣନ୍ତୁ, ମୋର କ'ଣ ଯାଏ । ମୋର ତ ସେଇ ଗୋଟାକ ଝିଅ, ବର୍ତ୍ତିବାଯାକ ଖାଇବା ପିନ୍ଧିବାକୁ ମୋର ତ ଅଭାବ ହେବ ନାହିଁ, ମୁଁ ଏକାଥରକେ ବଦଳି ଯାଇଛି । ବୁଝିଲେ ପଣ୍ଡେ ।

ଅପୂର୍ବ—ନମସ୍କାର ଆଜ୍ଞା ! ବିନା ଅନୁମତିରେ ଚାଲି ଆସିଛି, କ୍ଷମା କରିବେ । ଆପଣଙ୍କର ଲୋକ ଯାଇଥିଲା ।

ନୃସିଂ—"ଏ ମନେ ଭାବୁଥାଏ ଯାହା—କାଳେ ପ୍ରାପତ ହୁଏ ତାହା ।"

ଅପୂର୍ବ—ଆପଣ ଏଠି ଅଛନ୍ତି । କ୍ଷମା କରିବେ, ଦେଖି ନ ଥିଲି । ନମସ୍କାର ।

ନୃସିଂ—ସବୁଙ୍କର କୁଅଙ୍କ ହେବ, ଅତେ ମୋ ବୁ ଚୁମ୍ବଲ ମଲ୍ଲଯା ଶୁଣର ।

ବୀର—ବାପ୍ପ ବାପା, ଯାଙ୍କ କଥା ଶୁଣ ନାହିଁ, ମୁଁ କଥାଟା ଜଣ କି ତାଙ୍କରକାଳର ସବୁରି ଲୋକ ଧର୍ମଘଟ କରିବେ ବୋଲି କାଗଜ ପଟେଇ ଦେଇଛନ୍ତି ଯେ, ମୁଁ କଣ କରିବ କହିଲ, ତୁମେ ଠିକଏ ସମାଧାନ କରେଇ ଦିଅନ୍ତ ହେଲେ, ଅଜମଧ୍ୟ ଆଜ ଗୋଟାଏ ଭଲ ଖବର—

ପ୍ରଫୁଲ୍ଲ—ବୁଝିଲ ପୂର୍ଣ୍ଣ, ଭବ ଶୁଣୁ ତ ହେବେ, କିନ୍ତୁ କଥାଟା କାହିଁକି ଭବଟାକୁ ପ୍ରକାଶ କରି ପାରୁ ନାହାନ୍ତି ।

ବୀର—ପ୍ରକାଶ କାହିଁକି କରି ପାରିବ ନାହିଁ ହେ, ମୁଁ ତ ଏକାଥରକେ ଚୋଟାଏ ସିଦ୍ଧାନ୍ତରେ ପହଞ୍ଚି ସାରିଲିଣି, ଦେଶରେ କେତେ ପ୍ରକାର ସଂଘର୍ଷ ଚାଲିଛି, ସବୁ ଏଇ ଅର୍ଥନୈତିକ ଅବସ୍ଥାକୁ ନେଇ ତ । ବୁଝିଲ, ଆମେ ତ ଆଉ ଟଙ୍କା ପଇସା ଖାଉ ନାହୁଁ । ଭାତ ଡାଲି ହେଲେ ମଧ୍ୟ ଆମର ଚାଲୁଛି ।

ପ୍ରଫୁଲ୍ଲ—ହଁ, ଆପଣ ସଦା ପ୍ରଥମେ ପାଣି ନେଇ ଦେଇସା ରଖି ନ ଥାନ୍ତେ, ଦେଶର ଜଣେ ବଡ଼ ଧନୀ ହୋଇ ବସିଥାନ୍ତେ କେଉଁଠି ?

ବୀର—ନା, ନା, ନା ସେ କଥା ଆଉ କହ ନାହିଁ । ଧନ ରଖିବା ଆନନ୍ଦ ହେମାର ଗଲାଣି । ଆରେ ଧନ ଥିଲା ବୋଲି ତ ସେ ପାରୁ ସେ ହାତ ଯାଉ ଦେଲେ ପାଞ୍ଚ ହେଉ, ତନ ହେଉ ପଚେଇ ଦେଇଥିଲି । ଲୋକଙ୍କୁ ବିଶ୍ୱାସ ନାହିଁ; ବୁଝିଲ, ମୋଠୁଁ ଯାଇ ମତେ ଦେବେ କାହା, ପଚ୍ଚିଶ ହେଲାଣି ଆଉ କେତେ କାଳ ଦାବିବ ଯେ, କାହିଁକି ଏଥିରେ ସାଥୀ ହେବ ?

ପ୍ରଫୁଲ୍ଲ—ଅପୂର୍ଣ୍ଣ ବାବୁ ଆଉ କାହା ପାଖକୁ ଯାଇ ଗୃହ ଦଅ ବୋଲି ହାତ ପାତିବାକୁ ପଡ଼ିବ ନାହିଁ ।

ଧଙ୍କର— [ବାହାରୁ] ଅପୂର୍ଣ୍ଣ ବାବୁ ଏଠି ଅଛନ୍ତି ?

ପ୍ରଫୁଲ୍ଲ—ଅଛନ୍ତି ଅଛନ୍ତି, ଆସ ।

ଶଙ୍କର—[ପ୍ରବେଶ] ତେଣେ ଲୋକ ଜମା ହୋଇ ଗଲେଣି, ଆସ ଯିବା, ଆଜ ବହୁତ ଗ୍ରାମ ଲୋକ ଆସିଛନ୍ତି ।

ଗୁରୁ—କି କଥା ହେ, କାମ ନାହିଁ, ବାଣିଜ ନାହିଁ; ଦୁଃଖ ନାହିଁ, ସୁଖ ନାହିଁ, ସବୁବେଳେ ସଭା । ସଭା କଲେ କଣ ଦୁଃଖ ଛାଡ଼ି ଯାଉଛି କି ହେ ?

ଅପୂର୍ଣ୍ଣ—ଆଚ୍ଛା ନମସ୍କାର, ମୁଁ ଯାଉଛି ପରେ ଆସିବ ।

ଗୁରୁ—ନିଶ୍ଚୟ ଆସିବ, ନ ଆସି ଯିବ କୁଆଡ଼େ । ଆଣିବା ଭାର ମୋ ଉପରେ ରହିଲା । ଆପଣ କିଛି ବ୍ୟସ୍ତ ହେବେ ନାହିଁ ।

ଅପୂର୍ଣ୍ଣ—ଆସନ୍ତୁ ! ନମସ୍କାର । [ପ୍ରସ୍ଥାନ]

ଶଙ୍କର—ନମସ୍କାର । [ପ୍ରସ୍ଥାନ]

ଗୁରୁ—ଦଳ ଗୋଟିକଯାକ ଏଠି ବସି ମହା ନିଶ୍ଚିନ୍ତରେ ଖାଇବେ ।

ବୀର—ଖାଆନ୍ତୁ ବା ଯାହା କରନ୍ତୁ, ଏ ଧର୍ମଘଟର ଜ୍ୱାଳାରୁ ଆଗେ ରକ୍ଷା ପାଇବ । ଲଳିତାର ମାଉସୀ ତ ଆସିଛନ୍ତି, କେତେଟା ଦିନ ଏଠି ରହି ଯାଆନ୍ତୁ, ନିର୍ଦ୍ଦିଷ୍ଟ ଘରଟା କରେଇ ଦେବା ।

ଲଳିତା—[ଭିତରୁ] ଘରକୁ ଆସ ମଉସା ।

ବୀର—ମାଉସୀ ମଉସାଙ୍କୁ ନ ଦେଖିଲେ ରହି ପାରୁ ନ ଥିବେ । ହଁ ହଁ ଭିତରକୁ ଯାଅ । ମୁଁ ଯାଉଛି ମୋର ଯାହା ଅଛି ତାର ଗୋଟିଏ ତାଲିକା କରି ଦେବ । [ପ୍ରସ୍ଥାନ]

## ପଞ୍ଚମ ଦୃଶ୍ୟ

### ସ୍ଥାନ—ଗ୍ରାମ ଉପକଣ୍ଠ

ଇନ୍ଦ୍ରନାଥ ସଙ୍ଘ ନେପଥ୍ୟେ—ଗୀତ

ଗଢ଼ିବା ଜାତି ବଢ଼ିବ ଶକ୍ତି
ହୋଇରେ ଆମେ ଏକା
ଆସିଛେ ଏକା ଯିବାରେ ଏକା
କେ ନୁହେଁ କାହା ସଖା ।
ଠେଙ୍ଗା ଶୋଷୀଙ୍କୁ ଦୁଃଖି ରଙ୍କିଙ୍କୁ
ନ ଦାଅ କେହୁ ଧକା
ଠଙ୍କା ପେଡ଼ିକ ନୀତି ଗୃହୀଙ୍କ
ନ କର ଲେଖା ଯୋଖା ।
ନୀତି ଗ୍ରନ୍ଥରେ ନାରାୟଣରେ
ଏକଥା ଅଛି ଲେଖା ।
ନିରନ୍ନ ମୁଖେ ଦାଅରେ ମୁଠେ
ହୋଇବ କଥାରଖା,
ଝୁରୁ ଝୁରୁ ତ ଘଟିଲେ ମୃତ୍ୟୁ
ସବେ କଣାବଙ୍କା ।

[ଇନ୍ଦ୍ରନାଥ, ଅନ୍ୟାନ୍ୟ କର୍ମୀଗଣ ସ୍ଲୋଗାନ ଗାଇ ପ୍ରବେଶ । ଅଗନ୍ତୁକଗଣଙ୍କ ପ୍ରବେଶ—ଉପବେଶନ ]

ଇନ୍ଦ୍ରନାଥ—ଭାଇମାନେ ! ଆଜି ଆପଣମାନଙ୍କୁ ମୋର ବିଶେଷ କିଛି କହିବାର କଥା ନାହିଁ, ତୁମମାନଙ୍କ ନିକଟରେ ମୋର ଏକାନ୍ତ ଅନୁରୋଧ, ଆମଦେଶର ଏହି ଯେଉଁ ଅଧଃପତିତ

ଜାତ, ଅର୍ଥାତ ହରିଜନମାନଙ୍କୁ ଅପଣମାନେ ସହାୟତା ଦେବେ ।

ଇଜଣେ କୃଷକ—ଅଜ୍ଞା, ଏ ହାଡ଼ି ପାଣମାନଙ୍କୁ ଦେଉଳକୁ ନେଲେ କି ଉପକାର ହେବ ଯେ ଗାନ୍ଧୀ ମହାତ୍ମା ଏଥିରେ ଲାଗିଛନ୍ତି ?

ଇନ୍ଦ୍ରନାଥ—ସେମାନଙ୍କୁ ଦେଉଳକୁ ନେଲେ ଦେଶର କି ଉପକାର ହେବ, ଏକଥା ଅପଣମାନେ ମତେ ପଚାରୁଛନ୍ତି । ତାର ଜବାବ କେବଳ ସେଇ ମହାତ୍ମାହିଁ ଦେଇ ପାରିବେ, ଭଲ ଭାବରେ । ତେବେ ଆପଣମାନଙ୍କୁ ମୁଁ ଏତିକି କହୁଯାଉଛି ଭଗବାନ ସେମାନଙ୍କୁ ସୃଷ୍ଟି କରିଛନ୍ତି; ପୁଣି ଆମମାନଙ୍କୁ ମଧ୍ୟ ସୃଷ୍ଟି କରିଛନ୍ତି । ଅମେ ଦଳେ ଲୋକ ଏକଜିତ ହୋଇ, ଆଉ ଦଳେ ଲୋକଙ୍କୁ ଅଛୁଆଁ କରି ରଖିବା କଣ ପାପ ନୁହେଁ ? ଏତ ଗଲା ଅମ ଆତ୍ମାର ବିଚାର —

୨ୟ କୃଷକ—ବ୍ରାହ୍ମଣ ପଣ୍ଡିତ ଶାସ୍ତ୍ର ପୁରାଣ ସବୁଥିରେ ତ ଚଣ୍ଡାଳ ଜାତି ଅସ୍ପୃଶ୍ୟ ବୋଲି କହୁଛନ୍ତି । ଆମେ ସେକଥା ଏଡ଼ି ଦେଇ ପାରିବୁ କେମିତି ? ଆଉ ମଧ୍ୟ ସେମାନେ ଯେମିତ ଅଛନ୍ତି ସେମିତ ଥିଲେ, ଅମର କି କ୍ଷତି ହୋଇଯାଉଛି ।

ଇନ୍ଦ୍ରନାଥ—କ୍ଷତି ଅମର ବହୁତ ହେଉଛି । କାହିଁକି ନା, ଆମର ଏଇ ହରିଜନ ଭାଇ ଚିରକାଳ ଅଛୁଆଁ ଦୁଃଖରେ ରହି ଅନ୍ୟ ଧର୍ମ ଭିତରକୁ ଚାଲି ଯାଉଛନ୍ତି । ତେଣୁ ଅମ ସମାଜ ଦିନକୁ ଦିନ ଦୁର୍ବଳ ହୋଇ ପଡ଼ୁଛି । ଆମର ହିନ୍ଦୁଙ୍କ ସଂଖ୍ୟା ଦିନକୁ ଦିନ କମି ଆସୁଛି । ଅନ୍ୟ ଧର୍ମ ପାଖରେ ଆମେ ଦିନକୁ ଦିନ ହୋଇ ଯାଉଛେ ନ୍ୟୁନ । ଅପଣମାନେ ଶାସ୍ତ୍ର କଥା କହୁଛନ୍ତି । ସେହି ଶାସ୍ତ୍ର ତ ପୁଣି କହୁଛି ଦେଶ, କାଳ, ପାତ୍ର ଦେଖି କାର୍ଯ୍ୟ କରିବାକୁ ହେବ ବୋଲି । ବର୍ତ୍ତମାନ

ଆମ ଭାରତ ଦେଶ ଗୋଟିଏ ଭୀଷଣ ପରିସ୍ଥିତି ପାଖରେ ଆସି ପହଞ୍ଚି ଯାଇଛି । ଏ ସମୟରେ ପ୍ରତ୍ୟେକ ଲୋକ ନିଜକୁ ଗୋଟିଏ ଗୋଟିଏ ସୈନ୍ୟ ବୋଲି ମନେ କରି ନିଜକୁ, ନିଜର ଘରକୁ, ନିଜର ପରିବାରକୁ ରକ୍ଷା କରିବାକୁ ହେବ । ଏ ଅବସ୍ଥାରେ ଯଦି ଆମେ ଆମର ଦେଶର ବହୁ ସଂଖ୍ୟକ ଲୋକଙ୍କୁ ଅଲଗା କରି ରଖୁ; ତେବେ ଆମେ ନିଃସହାୟ ହୋଇଯିବା ।

୧ମ କୃଷକ—ନିଃସହାୟ ହୋଇଯିବା ବୋଲି ଆମର ପିତୃପିତାମହ ଯାହା କରି ନ ଥିଲେ, ଆମେ ସେ କଥା କିମିତି କରିବା ?

ଇନ୍ଦ୍ରନାଥ—ଆମ ପିତୃପିତାମହ ତାଙ୍କ ସୁବିଧା ଅନୁଯାୟୀ କାର୍ଯ୍ୟ କରିଥିଲେ ବୋଲି ଆମେ ଯଦି ସେଇ ଆଚରଣ ଉପରେ ଜୋର ଦେଇ ବସିର ବୁଦ୍ଧି ହରେଇ ବସୁ, ତାହାହେଲେ ଆମେ ଆଉ କୌଣସି କାଳେ ମନୁଷ୍ୟ ହୋଇ ପାରିବା ନାହିଁ । ଆଚ୍ଛା କହିଲ, ତୁମ ବାପା ତ ଅକ୍ଷର ଜାଣି ନ ଥିଲେ, ତୁମେ କାହିଁକି ସମାଜ ପଢ଼ିବାକୁ ବସି ଯାଉଛ । ତୁମ ବାପା ବଳଦ ଗାଡ଼ିରେ ଜିନିଷ ଆଣୁଥିଲେ; ଗୋଟାଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଗଲାବେଳେ ପାଦରେ ଚାଲି ଚାଲି ଯାଉଥିଲେ । ତୁମେ ବର୍ତ୍ତମାନ ଜିନିଷ ଆଣୁଛ ଟ୍ରକରେ । ଘରୁ ଅନ୍ୟ ସ୍ଥାନକୁ ଗଲାବେଳେ ବାସରେ ନ ବସିଲେ ଚଳୁ ନାହିଁ । ତାହାହେଲେ ତ ତୁମେ ଆଉ ପାରମ୍ପରିକତା ରକ୍ଷା କରି ପାରିଲ ନାହିଁ ।

୨ୟ କୃଷକ—ଏ ସବୁତକ ସବୁ ବାହାର କଥା । ସେ ହେଲା ଆମର ଧର୍ମ କଥା, ଘର କଥା, ସମାଜର କଥା ।

ଇନ୍ଦ୍ରନାଥ—ଠିକ୍ କଥା ପ୍ରଶ୍ନ କରିଛ, ସମାଜ ଚିରକାଳ ଗୋଟିଏ ବାଟରେ ଚାଲେ ନାହିଁ । ଆମର ଶାସ୍ତ୍ର କହୁଛି ବ୍ରାହ୍ମଣ କେବଳ ପୂଜା କରିବ, ପୂଜା କରେଇବ, ପଢ଼ିବ, ପଢ଼େଇବ, କିନ୍ତୁ

ଆଜି କାଲି ବ୍ରାହ୍ମଣମାନେ ସେପରି କାମ କରୁଛନ୍ତି, ଗାଧି ପାରୁଛନ୍ତି । ଦୋକାନ କରି ସଉଦା ବିକି କରୁଛନ୍ତି । ଅନ୍ନ, ମାଂସ ପର୍ଯ୍ୟନ୍ତ ବିକି କରୁଛନ୍ତି । ଅନ୍ୟର ସେବା କାର୍ଯ୍ୟରେ ମଧ୍ୟ ନିଯୁକ୍ତ ହେଉଛନ୍ତି, ତେବେ ସମାଜ ଭିତରେ ପରିବର୍ତ୍ତନ ହୋଇ ନାହିଁ ବୋଲି ଆମେ କହି ପାରିବା କି ? ଆମେ ଦେଖୁଛୁ ଦଶବର୍ଷ ପୂର୍ବେ ଯାହା ନୂତନ ବୋଧ ହେଉଥିଲା, ଆଜି ତାହା ପୁରାତନରେ ପରିଣତ ହୋଇ ଗଲଣି । ବ୍ରାହ୍ମଣର ନୀତି ଥିଲା ତ୍ରିସନ୍ଧ୍ୟାରେ ସ୍ନାନ କରି ଗାୟତ୍ରୀ ଜପ କଲାବା ପରେ ଖାଇବାକୁ ହେବ ବୋଲି । କିନ୍ତୁ ଆଜି କାଲି କୋଟ ପେଣ୍ଟ ପିନ୍ଧି, ଜୋତା ପାଦରେ ହିଁ ହୋଟେଲରେ ବସି [illegible] ହାତରୁ ଖାଦ୍ୟ ଖାଇବାକୁ କେହି ପାପ ବୋଲି ଭାବୁ ନାହାନ୍ତି । ସେଥିପାଇଁ ମୁଁ ଆଜି ଆପଣମାନଙ୍କୁ ଅନୁରୋଧ କରୁଛି, ଆପଣମାନେ ସେ ଅତୀତର କଥା ଚିନ୍ତା ନ କରି ବର୍ତ୍ତମାନର ବୁଦ୍ଧି ଦ୍ୱାରା ନିଜକୁ, ନିଜର ସମାଜକୁ ପରିଚାଳିତ କରନ୍ତୁ ।

୧ମ ବୃଦ୍ଧ—ଆପଣ ଯାହା କହିଲେ ସେ କଥା ଆମେ ସମସ୍ତେ ବୁଝିଗଲୁ, ଆଜିଠୁ ଆମେ ପ୍ରତିଜ୍ଞା କରୁଛୁ, କଂଗ୍ରେସର ନିର୍ଦ୍ଦେଶ ଅନୁସାରେ ଆମେ ସମସ୍ତେ କାର୍ଯ୍ୟ କରିବୁ ।

ଯଦୁନାଥ—ଆପଣମାନଙ୍କର ଏହି ବିଶ୍ୱାସ ବାଣୀରେ ମୁଁ ବଡ଼ ଆନନ୍ଦ ଲାଭ କରୁଛି । ଅତଏବ ଭାଇମାନେ ସମସ୍ତେ ସମସ୍ୱରରେ କହ, 'ଜୟ ଭାରତର ଜୟ !'

ସମସ୍ତେ—'ଜୟ ଭାରତ ମାତା[illegible]

'ଜୟ ହିନ୍ଦୁ [illegible]ମାନର ଜୟ !'

'[illegible] ଜନନୀ ଜନ୍ମଭୂମିର ଜୟ !' [ପ୍ରସ୍ଥାନ]

(ଯବନିକା ପତନ)

# ପଞ୍ଚମ ଦୃଶ୍ୟ

## ସ୍ଥାନ—ଅପୂର୍ଣ୍ଣଙ୍କ ଘରର କୌଣସି ଏକ କକ୍ଷ

ଅମିତା—କଣ ହେଲା ମୋର ? ଏଇ ମୁଁ, ନେତାମାନଙ୍କ ସମତା ପ୍ରିୟ ଭାବ ସ୍ମରଣ କରି ସେଆଡୁ ମୁହଁ ଫେରାଇ ଆଣୁଥିଲି। ବର୍ତ୍ତମାନ କେଉଁଆଡ଼େ ଗଲା ମୋର ସେ ବିରାଗ, ବନ୍ଧୁପ୍ରକୃତି କେତେବେଳେ ମତେ ତାଙ୍କରି ଅନ୍ତର ସହିତ ବିଜଡ଼ିତ କରି ଦେଲା, ଯେପରିକି ବହୁଯୁଗ ଆଗରୁ ଅପେକ୍ଷା କରିଥିଲା ଗୋଟାଏ ପରମ ଲଗ୍ନ, ତାଙ୍କ ଆଉ ମୋ ଭିତରେ ମିଳନ ଘଟାଇବା ନିମନ୍ତେ।—[ ଗୀତ ]

ତରୀ ନେଉଥିଲି ବାହି ଜୀବନ ତମିର ପଥେ
ଦେଖା ଦେଲ ତୁମେ ଧ୍ରୁବ ତାରକା
ସ୍ୱପନେ ସୁନାର ରଥେ
ତୁମ ପଥେ ଆଜ ହେବି ମୁଁ ଯାତ୍ରିଣୀ
ହେବ ମୋର ଘର ତୁମରି ତରଣୀ
ପାର ହେବି ବନ୍ଧୁ ଏ ଭବ ସାଗର ହାତ ରଖି ତୁମ ହାତେ।
ନାହିଁ ତ ମୋହର ଆଉ କିଛି ଧନ
ଅରପି ଦେବି ମୁଁ ମୋର ପ୍ରାଣ ମନ
ଯହିଁ ଯିବ ତୁମେ ଯିବି ପ୍ରଭୁ ମୋର ଥିବି ତୁମ ସାଥେ ସାଥେ।

ଅମିତା ମା—ଅମିତା ! ବଡ ଶୁଭ, ଗୋଟାଏ ବଡ଼ ଶୁଭ ଖବର ଧରି ଆସିଛି।

ଅମିତା—କି ଶୁଭ ଖବର ବୋଉ ?

ଅମିତା ମା—ବୀର ବାବୁଙ୍କର ଝିଅ ଲଳିତାକୁ ଦେଖିଛୁ ତ । ଅପୂର୍ବ ସୁନ୍ଦରୀ, ରୂପକୁ ଦେଖି ଭଗବାନେ ବୁଦ୍ଧି ବି ଦେଇଛନ୍ତି । ବୁଝିଲୁ, ତୁ ତ ହେଲୁ ପାଗଳି, ତୋର ଭାଇ ବି ହେଲା ପାଗଳ, ଭଗବାନେ ତାକୁ ଭଲ ବୁଦ୍ଧି ଦେଲେ, ଯାହାହେଉ ସେ ରାଜି ହୋଇଗଲା ।

ଅମିତା—ବଡ ଆନନ୍ଦର କଥା ବୋଉ, ଭାଇଙ୍କର ବାହା ଘର ହୋଇ ଗଲେ ମୁଁ ବଡ ଆନନ୍ଦ ହେବି । ଭାଉଜ ଆସିବେ, ପୁଣି ଧନୀ ଘର ଝିଅ, ଭାଇ ତ ପଇସା ଲାଗି ଅସୁବିଧା ଭୋଗୁଥିଲେ । ସେ ସବୁ ଦୂର ହୋଇଯିବ, ଦେଶର କାର୍ଯ୍ୟ ବି ଉଦ୍ଧାର କରି ପାରିବେ ।

ଅପୂର୍ବ ମା—ବୀର ବାବୁ ତାଙ୍କର ଟଙ୍କା କଲ ସାଥିରେ ଯାହା କିଛି ଅଛି ସବୁ ତ ଅପୂର୍ବ ନାଁରେ ଉଇଲ ଲେଖି ଦେଉଛନ୍ତି ।

ଅମିତା—ତାହାହେଲେ ତ ଆହୁରି ଭଲ ହେଲା, ଶ୍ରମିକ ଓ କୃଷିଙ୍କର ସବୁ ପ୍ରକାର ସୁବିଧା ହୋଇଯିବ । ମୁଁ ତ ଭାବୁଛି, ଆମ ଦେଶର ପୁଞ୍ଜିବାଦୀମାନେ ଏଇ ନୀତି ଯଦି ଅବଲମ୍ବନ କରନ୍ତେ, ଦେଶର ବହୁତ କିଛି କାର୍ଯ୍ୟ ହୋଇ ପାରନ୍ତା ।

ଅପୂର୍ବ ମା—ମୁଁ ଯାଉଛି, ଆଜି ଚନ୍ଦ୍ର ପଣ୍ଡିତେ, ମୁରୁବି ମୂଳାରା ସବୁ ଯିବେ ନିବନ୍ଧ କରି ଦେଇ ଆସିବେ । (ପ୍ରସ୍ଥାନ)

ଅମିତା—( ପଦଚାରଣ କରି ) ଶୁଣୁଛି ଆଜିକି ତିନି ଦିନ ହେଲା ଇନ୍ଦ୍ରନାଥ ବାବୁ ମନ୍ଦିର ପାଖରେ ଅନଶନ ଆରମ୍ଭ କରିଛନ୍ତି । ଏ ଅବସ୍ଥାରେ ଆମେ ଆମର ମନୁଷ୍ୟ ଜାତି ପ୍ରତି ଯେତିକି ସହାନୁଭୂତି ପ୍ରକାଶ କରିବା କଥା ସେତିକି ବି କରି ପାରୁ ନାହୁଁ ।

ଶରଧା—[ ପ୍ରବେଶ ] ମୋ ଚିଲଟି କାଲ ସକାଳୁ ଗଛଡା ଖିଏ ପକେଇବ, ସେ ହାଡ଼ ପାଣ ମୃତ୍ତାକୁ ଦେଖଲ ଭିତରକୁ ଛାଡ଼ିବ ନାହିଁ ଟି ।

ଅମିତା—କାହିଁକି, ହାଡ଼ ପାଣମୃତାକ କଣ ମନୁଷ୍ୟ ନୁହନ୍ତି କି ମାଉସୀ ? ଶରଧା ( ଅମିତାର କଥା ନଶୁଣି ) ଶୁଣୁଚୁ ନା ନାଇଁ ହେ ।

ମୃତ୍ତୁ—ଆଲୋ ନୋକେଇ ବୋଉ, ତୋ କଥା ନ ଶୁଣିବାକୁ ମୋର ମୁହ ଅଛି ନା, ନ ଶୁଣିଲେ ତେତେଣ ଦାନା ପାଣି ଉଠି ଯିବ ଯେ ।

ଅମିତା ମା—[ ପ୍ରବେଶ ] ସମୁଦ୍ଧଅଣୀ ଅସିଛନ୍ତି । ଆସ ଆସ ଘର ଭିତରକୁ ଆସ, ଦୁଆରେ ମୁହଁରେ କଳି କରୁଛ କାହିଁକି ?

ମୃତ୍ତୁ—ଆପଣ ଏବେ ସିନା ସମ୍ବନ୍ଧ ଆଣୀ ହେଲେ,ନୋକେଇ ବୋଉ କଥା ଗାଁ ଭିତରେ କାହାକୁ ଅଗୋଚର ଅଛି କହିଲ ? ଆଉ ମଧ୍ୟ ଆପଣ ଜାଣନ୍ତି ନାହିଁ ବୋଧହୁଏ, ନୋକେଇ ବୋଉ ସିନା ଖର, କିନ୍ତୁ ଭିତରେ (ମୁଖ ଭଙ୍ଗୀ କରି) ଠିକ ନାରକେଳ ଫଳ ପରି ସରସ ।

ଶରଧା—ଦେଖିଲ ସମୁଦ୍ଧଅଣୀ, ମଣିଷର ଚରିତ୍ର, ଶିଷ୍ୟଜନ କୋଉ କଥାରେ ବାରଣ ନାହିଁ । ମନୁଷ୍ୟ ଏତେ ଅକପଟି ହେବା ଭଲ ନୁହେ, ମନେ ରଖିଥାଅ । ( ପ୍ରସ୍ଥାନ )

ଅମିତା ମା—ସମ୍ବନ୍ଧ ତ ଆମର ଉଭୟଙ୍କର ବନ୍ଧୁ, ଚନ୍ଦ୍ର ପଣ୍ଡିତଙ୍କୁ ଡାକ ଆଣି ଏକା ସାଙ୍ଗରେ ଯିବେ ।

ମୃତ୍ତୁ—ଆଜ୍ଞା ତେବେ, ମୁଁ ଯାଏ । ( ପ୍ରସ୍ଥାନ )

ଅମିତା ମା—ଆସେ ଅମି । ( ପ୍ରସ୍ଥାନ )

ଅମିତା—ବର୍ତ୍ତମାନ ମୁଁ ନିଜେ ହିଁ ନିଜର କାର୍ଯ୍ୟପନ୍ଥା ଅନୁସରଣ କରିବାକୁ ହେବ । ତାହେଲେ କଣ କରିବ ମୁଁ । ଏଇ ଦୁଇ ଦିନ ଆଗରେ କରୁଥିଲି ସ୍ୱାଧୀନଦଳର ପ୍ରଚାର । ଆଜି ମୁଣି କଂଗ୍ରେସର ସପକ୍ଷରେ ପ୍ରଚାର କରିବି, ନା ! ତାହା ହେବ ନାହିଁ । (ଚିନ୍ତାକରି) ତେବେ ! କଣ କରିବ ! ହଁ, ଏହା ହିଁ ଗ୍ରହଣୀୟ । ଏହା ହିଁ ସ୍ମରଣୀୟ । ମୁଁ କୌଣସି ଗୋଷ୍ଠିରେ, କୌଣସି ଅନୁଷ୍ଠାନରେ ଯୋଗ ଦେବ ନାହିଁ । ମୁଁ କରିବ ଲୋକ ସେବା, ମୁଁ କରିବ ଅତୃପ୍ତ ଜନତାର କାଙ୍କ୍ଷିତ ମାନାରେ ହେଉ ଆକାଂକ୍ଷା ପୂରଣ । ସ୍ପେନ ଦେଶରୁ ପାଦ୍ରି ସାହେବ ଆସି କାଳିଙ୍ଗା ପ୍ରାନ୍ତରେ ଲୋକଙ୍କ ଭିତରେ କରୁଛନ୍ତି ପ୍ରଚାର, ଆଉ ସେହି ସ୍ଥାନମାନଙ୍କରୁ ଶହ ଶହ କନ୍ଧ, ଭାଇଙ୍କୁ କରେଇ ପାରୁଛନ୍ତି ଧର୍ମାନ୍ତରେ ଦୀକ୍ଷିତ । ମୁଁ କଣ ସେତିକି ପାରିବ ନାହିଁ ? ନିଶ୍ଚୟ ପାରିବ । ଯିବ ! ଚାଲିଯିବ ସେଇ ନିମ୍ନତର ସ୍ଥାନକୁ । ଶିକ୍ଷା ଦେବ ସେହି ନିମ୍ନସ୍ତରର ଲୋକଙ୍କୁ । ସେଇମାନେ ହେବେ ଆମଦେଶର ଭବିଷ୍ୟତ ସୈନିକ । ସେଇମାନେ ହେବେ ହିନ୍ଦୁ-ଧର୍ମର ସଂରକ୍ଷକ । ଭଗବାନ ମତେ ସାହସ ଦିଅନ୍ତୁ । ଶକ୍ତି ଦିଅନ୍ତୁ । ଅଜଣା ଅଶୁଣା ଅସଂଖ୍ୟ ଜନତାର ଆବଶ୍ୟକ ଯୋଗାଇ କରିପାରେ ।

(ପ୍ରସ୍ଥାନ)

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ସ୍ଥାନ—ରାସ୍ତା

(ଅର୍ଜୁନ ବେଶ ପ୍ରଭୃତି ପ୍ରବେଶ କରି)

ଜୟ ଭାରତ ଜୟ ଭାରତ ଜୟ ଭାରତ ବୋଲ
ମନୁଷ୍ୟ ହୃଦୟ, ଦେଉଛି ଡାକ, ପାପ ଭାର ଭୁଲ
ପିତା ରୂପେ ପାଳେ ଭାରତ ଦେଶ,
ଦିଏ ମାତା ରୂପେ, ଶୁଭ ଆଶିଷ
ତାହାର ସରୋଜ ଚରଣ ଛୁଇଁ ଗୁଳିରେ ଗୁଳ ।
ମଲେ ହେବ ଲଭ ସରଗ ରାଜ୍ୟ
ଜୀଇଁଲେ ଲଭିବା ଆମେ ସ୍ୱରାଜ୍ୟ
ଭବ ବନ୍ଧନେ ଇନ୍ଧନ ଦେଇ ଜାଳରେ ଜାଳ ।
ଜୟ ଭାରତ ବୋଲ ।( ପ୍ରସ୍ଥାନ )

( ଦୁଇ ଜଣ ସହର ବାସୀଙ୍କ ପ୍ରବେଶ )

ବଂଶୀ—କିହୋ ବିନୋଦ ବାବୁ, ଅନେକ ଦିନ ହେଲା ଦେଖା ହୋଇ ନ ଥିଲା । କୁଆଡ଼େ ଯାଇଥିଲ କି ?

ବିନୋଦ—ଯାଇଥିଲି ଚନ୍ଦ୍ରଭାଗା, ଆଜି ତ ଆସୁଛି । ତୁମେ ସବୁ ଭଲ ଅଛ ତ ?

ବଂଶୀ—ଆଜି ଏଠି ସଭା ହେବ । ଦେଖି ଯିବା କି ?

ବିନୋଦ—ନିଶ୍ଚୟ ଯିବା ଯେ, ସଭାଟା କରୁଛନ୍ତି କିଏ ?

ବଂଶୀ—ଇନ୍ଦ୍ରନାଥ ଅସ୍ପୃଶ୍ୟତା ନିବାରଣ ସଭା କରୁଛନ୍ତି । ସ୍ୱାଧୀନ ଦଳର ସଭା ନା କଂଗ୍ରେସ ଦଳର ସଭାକୁ ଯିବା କହିଲ ?

ବିନୋଦ—ଦୁଇଟା ଯାକ ସଭାକୁ ଯିବା, ଆମେ ହେଲେ ଦର୍ଶକ, ସଭାର ଗଳାଫଳରୁ ଆମର ଯାଏ ଆସେ କଣ ? ଯିବା, ଦେଖିବା ଯେଉଁ ଦଳଟା ଜିଣିଲା ଭଳିଆ ଦିଶିବ, ସେଇ ଆଡ଼କୁ ଆମେ ଆଉଜି ପଡ଼ିବା ।

ବଂଶୀ—ଚିରକାଳ ଆମେ ଇମିତ ସୁବିଧା ବାଦୀ ହୋଇ ରହି ଥିବା, ବିନୋଦ ବାବୁ ? ଦେଶଟା କେଉଁଆଡ଼େ ଗତି କରୁଛି ଟିକିଏ ଗମ୍ଭୀରଭାବରେ ଚିନ୍ତାକଲେ ଜଣାପଡୁଛି, ପ୍ରତ୍ୟେକ ଲୋକର ଯେପରି ଗୋଟାଏ କର୍ତ୍ତବ୍ୟ ରହିଛି ।

ବିନୋଦ—ସେ କର୍ତ୍ତବ୍ୟ କଥା ଆଉ କହନାହିଁ ବଂଶୀ ବାବୁ, ନିଜର ସଂସାର ଚଳେଇବା ତ ଦୁଃସାଧ୍ୟ ବ୍ୟାପାର ହୋଇ ପଡ଼ୁଛି; ସେଥିରେ ପୁଣି ଦେଶର କାର୍ଯ୍ୟ । ଆମେ ଦୁଇଟାଯାକ ସଭା ଦେଖିବା, ଯେଉଁଆଡ଼େ ଜୟହେବ, ସେଇଆଡ଼େ ଚାରଅଣା ପଇସା ଦେଇ ହୋଇଯିବା ସଭ୍ୟ । ଆମେ ତ ଚିରକାଳ ସୁବିଧାବାଦୀ, ସମୟ ସଙ୍ଗେ ତାଳ ଦେଇ ଚାଲିବା ଆମର ନୀତି । ଚାଲ ଯିବା— (ପ୍ରସ୍ଥାନ)

(ଶଙ୍କର ଓ ଅପୂର୍ବ ପ୍ରବେଶ)

ଅପୂର୍ବ—ଖୋସାମୋଦ କରି କରି ଜୀବନରେ ଆସିଗଲାଣି ଅବସାଦ । ଆଉ କୌଣସି କାର୍ଯ୍ୟ କରିବ ନାହିଁ ଏଣିକି ।

ଏସ୍ଥାନରେ ମୁଁ ଧାରଣ କରିବି ସନ୍ନ୍ୟାସ ବ୍ରତ । ଯେଉଁ ଜଗତରେ ମନୁଷ୍ୟପାଖରେ ମନୁଷ୍ୟର ବିଶ୍ବାସ ନାହିଁ, ସେହି ମନୁଷ୍ୟ ସମାଜଭିତରେ ରହିବା ଅତୌ ଆବଶ୍ୟକ ନାହିଁ ଶଙ୍କର ।

ଶଙ୍କର—ଆପଣ ଇମିତି ବିଚଳିତ ହେଲେ କୌଣସି କାର୍ଯ୍ୟ ହେବ ନାହିଁ, ଅପୂର୍ବ ବାବୁ ! ବିଶେଷତଃ ସେନାପତିର କର୍ତ୍ତବ୍ୟ ତା'ର ସେନାମାନଙ୍କୁ ସମାବେଶ କରି ରଖିବା, ଅନୁରି ମଧ୍ୟ ତା'ର କର୍ତ୍ତବ୍ୟ ଶେଷଯାଏ ସମର କରିବା—ସେ ଯୁଦ୍ଧରେ ଜୟୀ ହେଉ ବା ନ ହେଉ ।

ଅପୂର୍ବ—[ଚିନ୍ତିତ ଭାବରେ ପଦଚାରଣ କରି] ସେନାପତିର କର୍ତ୍ତବ୍ୟ ତାର ସେନାମାନଙ୍କୁ ସମାବେଶ କରିବା । ହଁ, ସେନାପତି ମୁଁ ? ମୋର କର୍ତ୍ତବ୍ୟ ସେନାମାନଙ୍କୁ ଏକତ୍ରିତ କରିବା— ।

ଶଙ୍କର—ଆଜି ଆମର ଏଇ ପାଖର କେତେକ ଲୋକଙ୍କୁ କୁହା ଯାଇଛି ଏଠି ସଭା ହେବ । ବୋଧହୁଏ ଆରତି ବାବୁ ସେମାନଙ୍କୁ ସାଙ୍ଗରେ ଧରି ଆସୁଛନ୍ତି । ହଁ,—ଏଇ ତ ଗୀତ ଶୁଭିଲଣି ।

[ ଗୀତ ଗାଇ ଗାଇ ଆରତି ପ୍ରଭୃତି ପ୍ରବେଶ ]

ହତଭାଗ୍ୟ ଆମେ ଅନ୍ଧା
ଶୋଷଣ ଦାଉରେ କଷଣ ଭୋଗିଲୁ
କେହି ତ ନୋହିଲେ ସାହା,
ଶାସକ ଗଣ ତ ଧନୀଙ୍କ ବାହାରେ
ମିଶାଇଲେ ନିଜ ବାହା ।
ଦରିଦ୍ରଙ୍କ ବନ୍ଧୁ କିଏ କାହିଁ ଅଛୁ
ଦେଖାଅ ଏ ଦିନେ ରାହା,

ଘେଙ୍କର ଦାଣ୍ଡରେ  ଟେଣ୍ଡା ଏକା ଲୁଚି
ଗ୍ଧାତକ କାରୁଣୀ ଲମ୍ବା ।
କୁଲଚୋର କର  ଚୋଳେ ଖାଇଲେ
ବୋଲଇଲୁ ଆର ବୁମ୍ବା,
ଆମର ଦୁର୍ନାମ  ଅନେକ ତ ଗାଇଲୁ
କରଣି ଅନନ୍ଦେ ଦୋହ୍ମା ।
ଗୋଲି ତଳେ ପଡ଼ି  ମୋଲି ଦୋଳି ହୋଇ
ଗାଲି ଦଏ ପ୍ରାଣ ପ୍ରିୟା ।
ଅପମାନ ଦାଉ  ସହିବା ନ ଆଉ
ଖୋଜିବା ଏଣିକି ରାସ୍ତା,
ଆମର ହାଡ଼ରେ  ରଚିବା ସମାଧି
ଦେଇଣ ଆମର ବାହ୍ମା ।

ଅମୂର୍ତ୍ତ—ଜୟ ସ୍ୱାଧୀନ ଭାରତର ଜୟ !

ସମସ୍ତେ—ଜୟ ସ୍ୱାଧୀନ ଭାରତର ଜୟ ।

ଅମୂର୍ତ୍ତ—ଭାଇମାନେ, ତୁମେମାନେ ଭଲ ଭାବରେ ଜାଣ, କଂଗ୍ରେସ ଅଦ୍ୟାବଧି ତୁମମାନଙ୍କ ନିମନ୍ତେ ସଭା ସମିତିରେ କେବଳ କହି ଆସିଥିଲା ମାତ୍ର, କାର୍ଯ୍ୟାତ୍ମକଭାବରେ କିଛି କରି ପାରି ନାହିଁ । ଯେଉଁମାନଙ୍କୁ ତୁମେମାନେ ନିଜର ପ୍ରତିନିଧି ବୋଲି ବ୍ୟବସ୍ଥାପକଭାକୁ ପଠାଇଥିଲ, ସେମାନେ ନାନା ପ୍ରକାର ମୋହରେ ଅନ୍ୟାସକ୍ତ ହୋଇ ତୁମମାନଙ୍କ ନିମନ୍ତେ କୌଣସି କାର୍ଯ୍ୟ କରି ପାରିଲେ ନାହିଁ । ଏଣୁ ମୁଁ ତୁମମାନଙ୍କୁ ଅନୁରୋଧ କରୁଛି, ତୁମେ ସମସ୍ତେ ଏକଯୁଟ ହୋଇ ଆମର ସ୍ୱାଧୀନ ଦଳ ସହିତ ମିଳିତ ହୋଇ ନିଜର ଅର୍ଥ ନୈତିକ

ସ୍ୱାଧୀନତା ନିମନ୍ତେ ଲଢେଇ କର । ନିଜକୁ ରକ୍ଷା କରିବା ନିମନ୍ତେ ଯତ୍ନଶୀଳ ହୋଇ ପଡ଼ ।

କଲ୍ୟାଣ—ଆଜ୍ଞା, ଆଜି ତ ଆପଣମାନେ ବଡ ବଡ କଥା କହୁଛନ୍ତି । ବୟାଳିଶି ସାଲରେ ଇଂରେଜ ସରକାର ଯୁଦ୍ଧ ଘୋଷଣା କରି ଯେତେବେଳେ ନେତାମାନଙ୍କୁ ଜେଲ ଦେଲେ, ସେତେବେଳେ ଏ ଦେଶର ଲୋକେ ସରକାର ସହିତ ସହଯୋଗ କରି ଦେଶରୁ ହଜାର ହଜାର ଯୁଦ୍ଧ ଚାନ୍ଦା ଅଦାୟ କରିଥିଲେ । ଜନଯୁଦ୍ଧ ନାମରେ ଲୋକଙ୍କୁ ଯୁଦ୍ଧକୁ ପଠେଇ ଦେଲେ । ତା ବଦଳରେ ଆମ ଦେଶ ଲୋକ ପ୍ରାଣ ଦେଇ ଆଉ ବାକି ଯାହା ଫେରି ଆସିଲେ । କି ଶିକ୍ଷା ପାଇ ଆସିଲେ ? ନାନା କୁନୀତି, କୁଅଭ୍ୟାସ ଶିଖି ଆସିଲେ, ଅର୍ଥ ଲୋଭରେ ପଡ଼ି ଜୀବନର ଶାନ୍ତି ହରେଇଲେ । ଏଇ ମାତ୍ର ହେଲା ଲାଭ ।

ଅନୂର୍ଣ୍ଣ—ତୁମେ ସବୁ ଭୁଲ ଧାରଣାର ବଶବର୍ତ୍ତୀ ହୋଇ ଏ କଥା ଭାବୁଛ । କିନ୍ତୁ ପ୍ରକୃତରେ ତାହା ନୁହେଁ । ନେତାମାନେ ଜେଲ ଗଲାବେଳେ ଆମର ଜନସେବା ସଙ୍ଘ ମଧ୍ୟ ଜେଲ ଯାଇଥିଲେ । ଯେତେବେଳେ ଜନସେବାସଙ୍ଘ ଶୁଣିଲେ ଦେଶର ନାନା ସ୍ଥାନରେ ଦୁର୍ଭିକ୍ଷର ଭୀଷଣ ପରିଣାମରେ ହଜାର ହଜାର ଲୋକ ମୃତ୍ୟୁ ମୁଖରେ ପଡି ଯାଉଛନ୍ତି, ସେତେବେଳେ ସେମାନେ ସରକାରଙ୍କ ସହିତ ସାଲିସ କରି ମୁକ୍ତ ହେଲେ । ଫେରିଆସି ଏହି କ୍ଷୁଧା ପୀଡ଼ିତ ଅସଂଖ୍ୟ ଜନତାକୁ ଦେଖି ସେମାନଙ୍କର ଅସହ୍ୟ ଦୁଃଖ ହେଲା । ସେମାନେ ଭାବିଲେ ଦେଶର ଅକର୍ମା ଜନତା ଅନ୍ୟାନ୍ୟ ସ୍ଥାନକୁ ଯାଇ ଭାବର ଆଦାନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଯୁଦ୍ଧ କୌଶଳ ମଧ୍ୟ ଶିଖି ଆସିବାର ସୁଯୋଗ

ପାଇବେ । ଆମେ କେବଳ କଥା କହି ସ୍ୱରାଜ୍ୟରକ୍ଷା କରିବା ଏ ଆଶା ଆମର ନାହିଁ । ଅହିଂସାରେ ସ୍ୱରାଜ୍ୟ ପାଇବା ଆଶା ଆମର ନାହିଁ । ଆମେ ଘରେ ବସି ଅହିଂସା ମନ୍ତ୍ର ଜପ କରୁ କରୁ ହୁଏ ତ କୌଣସି ବିଦେଶୀ ଶତ୍ରୁ ଆସି ମୁହୂର୍ତ୍ତିକରେ ମେସିନ ଗନ୍ ଚଳେଇ ଗୋଟାଏ ଗୋଟାଏ ଗ୍ରାମ ଧ୍ୱଂସ କରି ଦେଇ ଚାଲିଯିବ । ସେଥିପାଇଁ ଆମେ ପ୍ରତ୍ୟେକ ଗାଁରେ ସୈନ୍ୟ ସମାବେଶ କରି ରଖିବାକୁ ହେବ । ଏ ଦୃଷ୍ଟିରୁ ଆପଣ ମାନେ ଭାବି ପାରୁଥିବେ । ଯୁଦ୍ଧକୁ ଯିବା ଦ୍ୱାରା ଆମ ଦେଶ ଲୋକଙ୍କର କେତେ ଉପକାର ହୋଇ ପାରିବ ।

୧ମ କୃଷକ—ହଁ, ତମର ସବୁ କଥା ଆମେ ଶୁଣିଲୁଣି ଯେ, ହେଲେ ମଧ୍ୟ ଆମର ବିଶ୍ୱାସ ଅଛି । କେଉଁ ଯୁଗରୁ ଆମେ ମହାତ୍ମା ଗାନ୍ଧୀଙ୍କ କଥାରେ ବିଶ୍ୱାସ କରି ଆସିଛୁ । ଆହୁରି ମଧ୍ୟ, ଯାହାଙ୍କ ଅନୁକମ୍ପାରୁ ଆଜି ଏ ସଭାରେ ଠିଆ ହେଲୁ, ଯେଉଁ କଂଗ୍ରେସର ଦୟାରୁ ଆମେ ମଣିପୁର ବନ୍ୟାରୁ ଜୀବନ ଧରି ଫେରି ଆସିଲୁ, ତା କଥା, ତାହାର ନିର୍ଦ୍ଦେଶ ଆମେ କେବେ ଅମାନ୍ୟ କରି ପାରିବୁ ନାହିଁ । ଆମମାନଙ୍କର ଜଣେ ଉପକାରୀ ନେତା ହରିଜନମାନଙ୍କୁ ଦେଉଳକୁ ନେବାକୁ ଅନଶନ କରିଛନ୍ତି । ଆମେ ସମସ୍ତେ ହରିଜନଙ୍କୁ ଦେଉଳକୁ ପଠେଇ ତାଙ୍କର ଅନଶନ ଭାଙ୍ଗିବୁ । ତା ନ କଲେ ଭଗବାନ ଆମମାନଙ୍କୁ ଅଭିଶାପ ଦେବେ । ଏହାପରେ ଯାହା ହେବ ।

କଲ୍ୟାଣ—ବୋଲ, ଜୟ ଭାରତର ଜୟ
ଜୟ ଭାରତର ଜୟ

( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ମନ୍ଦିର ଦ୍ୱାର ଶାୟିତ ଇନ୍ଦ୍ରନାଥ

ଅମିତା—[ପ୍ରବେଶ] [ମୁଗ୍ଧ ଭାବରେ ଗୃହେଁ] କି ବିଚିତ୍ର ! ଏ ସୃଷ୍ଟି, ଭାବିଲେ ବୋଧ ହେଉଛି ସତେ ଯେପରି ସବୁ ଅସମ୍ଭବ । ମୋର ଏହି ପରିବର୍ତ୍ତନ କଣ ଅସ୍ୱାଭାବିକ ? ମୁଁ କେତେ ପ୍ରକାର ଚେଷ୍ଟା କରୁଛି, ନିଜକୁ ସଂଯତ କରିବାକୁ । ସଂଯତ ତ କରିପାରୁ ନାହିଁ କୌଣସି ମତେ । ମୋ ମନର ଭାବ ତାଙ୍କୁ ଜାଣିବାକୁ ଦେବା କଣ ଠିକ ହେବ ।

[ ଅଗ୍ରେ ଅଗ୍ରେ ଯାଇ ପାଦ ପାଖରେ ବସିବା ]

ଇନ୍ଦ୍ରନାଥ—(ଉଠି ଗୃହେଁ ) (ପୁଣି ବସିବା)

ଅମିତା— ( ଉଠି ଠିଆ ହୋଇ ) ନମସ୍କାର । ଦର୍ଶନ କରି ଆସିଥିଲି ଯେ, ପୂଜାରୀ ମହାଶୟ ତ ନାହାନ୍ତି ।

ଇନ୍ଦ୍ରନାଥ—(ହସି) ଓହୋ ! ଦେବତା ଦର୍ଶନ କରି ଆସିଥିଲେ । କିନ୍ତୁ ଯେମିତି ଭାବରେ ଶ୍ରୀକୃଷ୍ଣ ପାଦ ପାଖରେ ଅର୍ଜୁନ ବସିଲା ପରି ବସି ଯାଇଥିଲେ ଯେ ! ଜନଯୁଦ୍ଧରେ ମୋର ସାହାଯ୍ୟ ମାଗୁ ନାହାନ୍ତି ତ ?

ଅମିତା—ଜନଯୁଦ୍ଧରେ ଯୋଗ ଦେବାକୁ ରଥ ଆଉ ସାରଥି ଉଭୟର ଅଭାବ ।

ଇନ୍ଦ୍ରନାଥ—(ହସି) କାହିଁକି, ଆପଣଙ୍କ ମନରୂପ ରଥ ଅଛି । ବାକି ଅଛି ସାରଥି, ଗୋଟାଏ ବାଛି ନେଲେ ତ ଦେଶ ଯୁଦ୍ଧରେ ଜୟୀ ହୋଇ ପାରେ ।

ଅମିତା—ମୁଁ ଭାବିଥିଲି, ଆପଣ କେବଳ ରାଜନୀତି ଛଡ଼ା ଅନ୍ୟ କୌଣସି କଥା ଜାଣନ୍ତି ନାହିଁ ବୋଲି । କିନ୍ତୁ ଆପଣଙ୍କର

କଥାରୁ ଦେଖି ଧାରଣା ବଦଳି ଯାଇଛି । ଆପଣ ତ ନିଜେ କବି, ଅଳ୍ପ ଭାବୁଚ ଯାହାଥି ଗୋଟାଏ ବାଢ଼ି ଦିଅନ୍ତୁ ।

ଇନ୍ଦ୍ରନାଥ—ଆପଣଙ୍କର ଆଗର ଧାରଣାଟା ତ ଠିକ୍ ଥିଲା । ମୁଁ ତ ଅତୌ କବି ନୁହେଁ, ତେବେ କବିଙ୍କୁ ଅନୁଭବ କରେ ।

ଅମିତା—ଆପଣ ଉପବାସରେ କ୍ଲାନ୍ତ ହୋଇ ପଡ଼ିଲେଣି । ମୁଁ ଜାଣେ ଗୁଣୀମାନେ ନିଜର ଗୁଣ ଦେଖେଇ ହୁଅନ୍ତି ନାହିଁ । କଥାରେ ଅଛି, "ଜ୍ଞାନେ ମୌନଂ କ୍ଷମାଶକ୍ତୌ ତ୍ୟାଗେ ଶ୍ଲାଘା ବିପର୍ଯ୍ୟୟଃ ।"

ଇନ୍ଦ୍ରନାଥ—ମୁଁ ଉଠିବା ଆଗରୁ ଆପଣ ବସିଥିଲେ । ବର୍ତ୍ତମାନ ବସନ୍ତୁ ମୋର କଥା ଅଛି । ଅର୍ଜୁନ କହୁଥିଲା ଆପଣ ମୋର ସୁଖ୍ୟାତ ପ୍ରଚାର କରୁଛନ୍ତି ? ଏ କଥା ଶୁଣିବାକୁ ବଡ଼ ଆନନ୍ଦର କଥା ତ !

ଅମିତା—ଆପଣଙ୍କ ସପକ୍ଷରେ ନୁହେଁ, କଂଗ୍ରେସ୍ ସପକ୍ଷରେ ପ୍ରଚାର କରୁଛି । ଆପଣ କ୍ଲାନ୍ତ ଅଛନ୍ତି, ଶୁଅନ୍ତୁ ।

ଇନ୍ଦ୍ରନାଥ—ଆପଣଙ୍କ ସହିତ କଥାବାର୍ତ୍ତା କଲେ ମୋର କ୍ଲାନ୍ତି କମି ଯାଉଛି । ବସନ୍ତୁ ଆପଣ, ଆପଣଙ୍କୁ ଦେଖିଲେ ମୋର ମନେ ହେଉଛି ଆପଣ କୌଣସି ଅତି ଭଲ ଗୁରୁଙ୍କଠାରୁ ଶିକ୍ଷା ପାଇ ଆସିଛନ୍ତି ।

ଅମିତା—[ହସି] ମୋର ଗୁରୁ ତ ସ୍ୱୟଂ ଭଗବାନ ।

ଇନ୍ଦ୍ରନାଥ—ତାହାହେଲେ ତ ଆପଣ ଭାଗ୍ୟବାନ !

ଅମିତା—ଆପଣ ବ୍ୟାକରଣ ମାନନ୍ତି ନାହିଁ ନା କ'ଣ ? ସ୍ତ୍ରୀ କେବେ ଭାଗ୍ୟବାନ ହୋଇପାରେ ନାହିଁ, ଭାଗ୍ୟବତୀ ହୁଏ ।

ଇନ୍ଦ୍ରନାଥ—ମାନେ କିନ୍ତୁ ଜାଣେ ନାହିଁ, ଆପଣ ବୋଧହୁଏ ସେ ସମ୍ବନ୍ଧରେ ପାରଦର୍ଶିନୀ; ମତେ କିନ୍ତୁ ମାଟେଶିଲ ବୋଲି ଉପକୃତ ହୁଅନ୍ତି, ଆଉ ମୁଁ ଆପଣଙ୍କୁ ଭାଗ୍ୟବତୀ ବୋଲି

କହନ୍ତୁ । ଆପଣଙ୍କ କଥାବାର୍ତ୍ତା ଶୁଣିଲେ, ଆପଣଙ୍କ ପ୍ରତି ସ୍ୱତଃ ଶ୍ରଦ୍ଧା ଆସି ଯାଉଛି । ଆପଣ କେଉଁ ସ୍କୁଲରେ ପଢିଥିଲେ ?

ଅମିତା—ନୟାଗଡ଼ ମାଇନର ସ୍କୁଲରେ ପଢ଼ିଥିଲି, ମୋର ଅଜା ଜଣେ ପଣ୍ଡିତ ଥିଲେ । ସେ ମତେ ପଢ଼ାଇ ଦେଇଥିଲେ ।

ଇନ୍ଦ୍ରନାଥ—ଆପଣ ଶୁଣିଲେ ବିଶ୍ୱାସ କରିବେ କି ନାହିଁ, ମୁଁ ଏଠାକୁ ଆସିବା ଅବଧି ମୋ ମନରେ ଯେଉଁସବୁ ନୂଆ ଅନୁଭୂତି ଜାଗି ଉଠିଛି, ସେ ସବୁ ଭାଷା ଦେଇ ତିଆରି କରି କହି ପାରୁନାହିଁ, ଆପଣ କଣ କିଛି ବୁଝି ପାରୁଛନ୍ତି— ।

[ନେପଥ୍ୟରୁ ଗୋବିନ୍ଦ ଗୀତ ଗାଇବା; ଚନ୍ଦ୍ର ପଣ୍ଡିତ ଓ ଗୁରୁ ପ୍ରବେଶ]

ଅମିତା—[ପ୍ରସ୍ଥାନ]

ଚନ୍ଦ୍ର—[ ପ୍ରବେଶ ] ଆରେ ଗୁରୁ, ସୃଷ୍ଟିରେ ସବୁ ନୂଆ ନୂଆ କଥା ଘଟୁଛି, ବୁଝିଲୁ ।

ଗୁରୁ—ଆଜ୍ଞା, ବଡ଼ ହଇରାଣିଆ କଥା ହେଲା, ଏକା ଗାଁ ଭିତରେ ଏଣେ କମ୍ୟୁନିଷ୍ଟ ସଭା ହେଲା ବେଳକୁ, ଗାଁ ବାହାରେ ତେଣେ କଂଗ୍ରେସ ସଭା । ନାହିଁ, ଧାଁ ଚାଲିଛି । ଏଣେ କଅଣଟା କଣ ବୁଝିଲେ କି ଆଜ୍ଞା ! ଦେବତା ବୋଲି ତ ଆମର ଟିକେ ବିଶ୍ୱାସ ନ ଥାଏ । ଯେଉଁ ଚାରି ପଇସା ଲାଭ ହୁଏ, ସେଇ ଆଡ଼କୁ ଆମେ ଆଉଜୁ, ବୃଥାରେ ସିନା ଦେବତା ଦେବତା ବୋଲି ଆଡ଼ମ୍ବର ଦେଖେଇ ହେଉ ।

ଚନ୍ଦ୍ର— [ବିସ୍ମୟରେ ବିବ୍ରତ ହୋଇ] କିରେ କଣ କହିଲୁ, ତୋ ମୁହଁରୁ ଏ କଥା ! ଏଁ କଣ କହିଲୁ, ଦେବତା ଉପରେ ତୋର ବିଶ୍ୱାସ ନାହିଁ ? ଦେବତା ଉପରେ···ତୋର···ବିଶ୍ୱାସ···ନାହିଁ । କିରେ ଗୁରୁ । ଦେବତା ଉପରେ ତୋର ବିଶ୍ୱାସ ନାହିଁ ?

ଗୁରୁ—ବିଶ୍ୱାସ ଆଉ କେଉଁଠି ଅଛି ଆଜ୍ଞା ! ମଉସା ପାଇଲେ ଆମେ ସବୁ କରୁ । ଆପଣ କହିଲେ ହରିଜନମାନଙ୍କ ଖାଲି ଗୋମାଂସ ଭୋଜ, ଚଣ୍ଡାଳ । ଗାଁ ଭିତରେ କେତୋଟା ଭଲ ବ୍ରାହ୍ମଣ ଅଛନ୍ତି ଖୋଜ ବାହାର କରନ୍ତୁ ତ ! ନଟବର ଦାସ ଚଣ୍ଡାଳଠୁ ଅଧିକ ହେଲେ, ସ୍ନାନ କାର୍ଯ୍ୟ କଲା, ଟଙ୍କା ପଚାଶ ଦେଉଳକୁ ଦେଲା ବୋଲି ତାକୁ ଆପଣମାନେ ଭଲ କରି ଦେଲେ । ସେ ହେଲା ପୁଣ୍ୟ-ପୂତ ବ୍ରାହ୍ମଣ । ବର୍ତ୍ତମାନ ତ ପୁଣି ସେ ସେଇ ଆଚରଣ କରୁଛି । ଦେବତାର ପାଟି ଭୁଣ୍ଡ ଅଛି ଯେ ପଚାରିବ ! ଦେବତା ତ ପଥର, ସେ ନୀରବରେ ସମସ୍ତଙ୍କର ଅଗ୍ରହ ଅନାଗ୍ରହ ସହ୍ୟ କରି ଯାଉଛି ।

ଚନ୍ଦ୍ର—ଆରେ ଯା, ପୁଣି ସେଇ କଥା କହୁଛୁଣି, କିରେ ଦେବତା ପାଖରେ ତୋର ବିଶ୍ୱାସ ନାହିଁ !

ଗୁରୁ—ସେଇ କଥା ତ କହୁଛି ଆଜ୍ଞା, ବିଶ୍ୱାସ ଆଉ କେଉଁଠି ଅଛି ! କହିଲି ପରା ଆମେ ବିଶ୍ୱାସ କରୁଚେ ଟଙ୍କାକୁ; ଟଙ୍କାହିଁ ଆମର ସବୁ, ମଣିଷ ନୁହେଁ କି ଦେବତା ନୁହେଁ ।

ଚନ୍ଦ୍ର—କି କଥା କହୁଛୁ ରେ—ବିଶ୍ୱାସ ନାହିଁ ! ବିଶ୍ୱାସ ନାହିଁ !

ଗୁରୁ—ବିଶ୍ୱାସ ତ ନାହିଁ, ଆପଣଙ୍କର ବିଶ୍ୱାସ ଅଛି କି କହନ୍ତୁ ତ ?

ଚନ୍ଦ୍ର—କିରେ ! ମୋ ସଙ୍ଗରେ ଥଟ୍ଟା କରୁଛୁ । କିଏ କହିଲା ବିଶ୍ୱାସ ନାହିଁ, ଥରେ ନୁହେଁ ଶହେ ଥର କୁହ ବିଶ୍ୱାସ ଅଛି, ବିଶ୍ୱାସ ଅଛି ।

ନେପଥ୍ୟେ— [ ଗୀତ ]

ଜାଗରେ ଜନତା ଜାଗିଉଠ ଆଗ
ପଡ଼ୁଛି ଦେଶର ଡାକ

ଅଙ୍ଗ ବଙ୍ଗ ଆଦି ଆଗେ ଆଗେ ଧାଇଁ
ରଖିଥିଲେ ବାହାରେ ଠେକ ।
ଛୁତ ଅଛୁତ କରିଥି ମନ୍ଦିର
ଘର କୋଣେ କେତେ ରହିଥିବ ପଡ଼ି
କରମକୁ ମଣି ପରମ ଧରମ
ବର୍ମ ହୋଇ ଭ୍ରମ ଲକ୍ଷ୍ୟ ।
ସାଗର ସେ ପାରୁ ଆସିଣ ଅନେକ
ବସିଲେ ଏ ଦେଶେ ହୋଇଣ ମାଲିକ
ଭୁଲି ଭଲ କାହିଁ ହଜାଇଣ ସୌଖି
ବସି ଅଛ ହୋଇ ମୂକ ।
ଆମର ଭାଇଙ୍କୁ ବଚନ ଛଳରେ
ନିଅନ୍ତି ବିଦେଶୀ ଧରମ ଅନ୍ତରେ
ଅଯାଉଗ ଆମେ ଅଛୁଆଁଙ୍କୁ ବାଛି
କହୁଛୁ ଲଲାଟ ଲେଖା ।

( କେତେକ ହରିଜନ, ଅର୍ଜୁନ ଚରଣ ପ୍ରବେଶ )

କଲ୍ୟାଣ—[ ପ୍ରବେଶ ] ଆମେ ସବୁ ଧର୍ମପାଠ କରନ୍ତୁ । ବ୍ରାହ୍ମଣମାନେ ଆମକୁ ନ ଛୁଇଁଲେ ଆମେ ଦେବତା ଦର୍ଶନ କରିବାକୁ ପାରିବୁ ନାହିଁ । ସେଥିପାଇଁ ମୁଁ କହୁଛି ଆଜ୍ଞା, ଉପବାସଟା ଛାଡ଼ି ଦିଅନ୍ତୁ ।

ଚନ୍ଦ୍ର—[ କଲେଖି ଚାହିଁ ] କିରେ, ତୁ ପୁଣି କୁଆଡ଼େ ଆସିଛୁ ?

କଲ୍ୟାଣ—ଆଜ୍ଞା, ମୁଁ ପରା ରାମ ନାୟକର ପୁଅ, କଲ୍ୟାଣ ନାୟକ ।

ଚନ୍ଦ୍ର—(ଅତି ବ୍ୟସ୍ତହୋଇ) ଏଁ, ହାଡ଼ି ରାମ ନାୟକର ପୁଅ ! ଗଲା, ଗଲା, ସବୁଗଲା । ଆମର ସେ ସନାତନ ଧର୍ମ ଲୋପ କରିବାକୁ ବସିଛ, ଆଉ କଣ ?

କଲ୍ୟାଣ—ସନାତନ ଧର୍ମ ଅଟେମ କାହିଁକି ଲୋପ କରିବୁ ଆଜ୍ଞା! ସେ ଆପେ ଆପେ ଲୋପ ପାଇଯିବ ମୁସଲମାନ ଆଉ ଖିରସ୍ତାନଙ୍କ ପ୍ରଭାବରେ। ଆପଣମାନେ ଅଳ୍ପକାଳରେ ଦେଖିବେ ଯେ।

ଚନ୍ଦ୍ର—କିରେ! ତୋର ସାହସଟା ତ କମ୍ ନୁହେଁ। ମୋ ମୁହଁ ପାଖରେ ଠିଆ ହୋଇ ଯୁକ୍ତି କରୁଛୁ। କିରେ ମୁଁ କିଏ ଜାଣୁଛୁ? ନା, ନା, ନା !!! ଆଉ ଏ ସଂସାରରେ ଆମର ସ୍ଥାନ ନାହିଁ। ଏମାନେ ଯଦି ଆସି ଦେବତା ପୂଜା କରିବେ, ଆମେ ସବୁ ବଳେ ଯାଇ ହାଡ଼ି ପାଣ ସାହିରେ ଗୋରୁ କାଟି ବସିବୁ, ଆଉ କଣ! ନିଆଁ କି ଧୂଆଁ ଗାନ୍ଧିବାଦ ଦେଶରେ ପଶିଲା, ଦେଶର ଧର୍ମ କର୍ମ ସବୁ ଧ୍ୱଂସ ହେଲା। ସମାଜ ଧ୍ୱଂସ ହେଲା। ଅବଳା ପ୍ରବଳା ହୋଇ ପୁରୁଷଗୁଡ଼ାକୁ ବଶ କରି ନେଇ ଦେବେ।

ମୂର୍ଖ—ହଁ ଆଜ୍ଞା, ଗାନ୍ଧିବାଦଟାରେ ସବୁ ଯାହାହେଉ ଭଲକଥା ଅଛି। କିନ୍ତୁ ଏଇ ଯେଉଁ ପରଦା ପ୍ରଥା ଉଠିବା କଥା ଅଛି, ସେ କଥାରେ ମୁଁ କେବେ ଏକମତ ନୁହେଁ।

ଚନ୍ଦ୍ର—ଅରେ କହିଲି ସବୁ ଦେଶଟା ଉତ୍ସନ୍ନ ହୋଇଗଲା। ସ୍ତ୍ରୀଲୋକ ଘରୁ ବାହାରିଲେ, ଆଉ ସେମାନଙ୍କର ଧର୍ମ କର୍ମ ବୋଲି କିଛି ରହେ? ଛାଡ଼ ସେ କଥା! ଧର୍ମ, କର୍ମ, ସମାଜ ସବୁ ତ ଗଲା; ଆଉ ଅଛି କଣ ଯେ, ଏଣିକି ତ ଯେଉଁଠି ଦେଖିଲେ ସେଇଠି ବର୍ଣ୍ଣଶଙ୍କର ସନ୍ତାନ ବ୍ୟାପି ଯିବେ। ଏଇ କୁଳାଙ୍ଗାରମାନେ ନିଜ ନିଜର ସ୍ୱାର୍ଥ ସିଦ୍ଧି ଆଶାରେ ଧର୍ମର ବିଲୋପ ସାଧନ କରିବାକୁ ବସିଛନ୍ତି।

ଇନ୍ଦ୍ରନାଥ—(ଉଠିପଡ଼ି) ଆପଣମାନଙ୍କ ଭଳି କେତେ ଜଣ ଅତି ସଙ୍କୀର୍ଣ୍ଣମନା ଲୋକ ହିଁ ହିନ୍ଦୁ ଧର୍ମର ବିଲୋପ ସାଧନ କରୁଛ

ଅଛନ୍ତି । (କଲ୍ୟାଣକୁ ଦେଖାଇ) ଏହି ପରି ସାଧୁ ସଚ୍ଚରିତ୍ର ଶହ ଶହ ଲୋକଙ୍କୁ ଅନ୍ୟ ଧର୍ମରେ ପ୍ରବେଶ କରାଇ ଦିନକୁ ଦିନ ସମ୍ପ୍ରଦାୟଟାକୁ ଦୁର୍ବଳ କରି ଦେଉଛନ୍ତି । ଯଦି ହିନ୍ଦୁ ଧର୍ମ ବିଲୋପ ସାଧନ ହୁଏ ତେବେ ଆପଣମାନଙ୍କ ଦ୍ୱାରା ହିଁ ହେବ ।

ଚନ୍ଦ୍ର—[ବିଚଳିତ ହୋଇ] ଅରେ ଏଁ ! କଣ କହିଲା ଏ ଲୋକଟା ? ଏଁ, ଅମେ କରୁଛୁ ହିନ୍ଦୁ ଧର୍ମର ବିଲୋପ ସାଧନ ! କହିଲ ! ବିଲୋପ ଶବ୍ଦର ପ୍ରକୃତ ଅର୍ଥ କଣ ଜାଣିଛି କି ? ଏଡ଼େ ବଡ଼ ଶବ୍ଦ ଗୋଟାଏ ଉଚ୍ଚାରଣ କରିବାକୁ ତୁମ ଜିଭ ଲେଉଟିଲା କିପରି ହୋ ? ଜାଣ ! ଆମରି ପରି ଜଣେ ମାତ୍ର ଲୋକ ଗୋଟାଯାକ ଭାରତବର୍ଷରେ ଜୀବିତ ଥିଲେ, ହିନ୍ଦୁ ଧର୍ମ ରହିଥିବ ଯାବତ ଚନ୍ଦ୍ରାର୍କେ ସଜୀବ । ଜାଣ ତ, ଏକମାତ୍ର ଶଙ୍କରାଚାର୍ଯ୍ୟ ଲକ୍ଷ ସଂଖ୍ୟକ ବୌଦ୍ଧ-ସୌଧ କରିଥିଲେ ଧୂଳିସାତ୍ । ଆଉ ଏହା ମଧ୍ୟ କହି ରଖୁଛି, ଲୋକ ଶତ ସହସ୍ର, ଲକ୍ଷ କୋଟି ସଂଖ୍ୟାରେ ଅନ୍ୟ ଧର୍ମ ନେଲେ ବି ହିନ୍ଦୁ ଧର୍ମର ବିନ୍ଦୁଏ ସୁଦ୍ଧା କ୍ଷତି ହେବ ନାହିଁ । ଜାଣ, ତୁମେମାନେ ଶତ ଚେଷ୍ଟା କରି ମଧ୍ୟ ଏମାନଙ୍କୁ ବ୍ରାହ୍ମଣ କରି ପାରିବ ନାହିଁ । ଋଷିବାକ୍ୟ ଅଛି—

"ପାୟସ ଦେଇ ସ୍ନେହେ ବାୟସ ପାଳିଲେ
ପାରଇ କି ଛାଡ଼ିସେ ମାସାଂହାର ଛଳେ ।"

ଅର୍ଜ୍ଜୁନ—ପଣ୍ଡିତ ମହାଶୟ ! ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ବୁଝିଲ, ଦୁଇଥର ହେଲ, ତିନିଥରହେଲକୁ ଆମରି ଜୟ ସୁନିଶ୍ଚିତ । କଲ୍ୟାଣ ଭାଇ, ଚାଲ ଯିବା, ଗାଁର ସମସ୍ତଙ୍କୁ ଧରି ଆସିବା !

(ପ୍ରସ୍ଥାନ)

ଚନ୍ଦ୍ର—ଗାଁ ଲୋକ ତ ମୋର ହାତ ମୁଠା ଭିତରେ । ଏମାନେ କଣ କରିବେ ମୁଁ ଦେଖେ। (ପ୍ରସ୍ଥାନ)

ଗୁରୁ—ସଙ୍ଗେ ସଙ୍ଗେ କୁରୁକ୍ଷେତ୍ର ଆରମ୍ଭ ହୋଇ ଗଲଣି, ଆଉ କଣ! (ଇନ୍ଦ୍ରଙ୍କୁ ଚାହିଁ) ଆପଣ କିଛି ବ୍ୟସ୍ତ ହେବ ନାହିଁ। ଦୁଇଦିନ ହେଲା ଅମିତା ଘର ଘର ବୁଲି ଯାହା ଯେତେ ବୁଝେଇ କହି-ଲେଣି, ଆମ କଥା ଆଉ ରହିବ ନାହିଁ! ହଁ, ଆପଣ କେବେର ପଣା ଟିକିଏ ପିଇଥାନ୍ତେ?

ଇନ୍ଦ୍ରନାଥ—ନାଁ, ମୁଁ ପାଣି ପିଇଛି। ପଣା ମୋର ଦରକାର ନାହିଁ।

ଗୁରୁ—ଆଜ୍ଞା, ଗୋଟିଏ କଥା ପଚାରିବ ବୋଲି ଭାବିଛି। ଗାନ୍ଧିଜୀ ତ ସଂସାରୀ ମନୁଷ୍ୟ, ଆଉ ଆପଣ କାହିଁକି ଆମର ଏଇ ଅମିତାଟିକୁ ବିବାହ କରୁ ନାହାନ୍ତି?

ଇନ୍ଦ୍ରନାଥ—ଦେଶ ସେବୀ ମୁଁ। ମୋର ଘର ପଥେ, ପ୍ରାନ୍ତରେ। ଗୃହୀ ହେବା ମୋ ଭାଗ୍ୟରେ ନାହିଁ। ସ୍ତ୍ରୀ ଲୋକର ମାୟାରେ ଆବଦ୍ଧ ହେଲେ ଦେଶର କାର୍ଯ୍ୟ କରି ହୁଏ ନାହିଁ। ଦେଶସେବା ମୋର ଧର୍ମ, ମୁଁ ସେ ଧର୍ମତ୍ୟାଗ କରି ପାରିବ ନାହିଁ।

ଗୁରୁ—ସ୍ତ୍ରୀ ନେଇ ସଂସାର କରିବା ଆହୁରି ବଡ଼ ଧର୍ମ ହୋ। ତାହା ହେଲେ ଚିରକାଳ କଣ ଏପରି ରହିବେ। (ମୁଖଭଙ୍ଗି କରି) ଅସମ୍ଭବ! ଅସମ୍ଭବ! ଭର୍ତ୍ତୃହରି କଣ କହିଛନ୍ତି ଜାଣନ୍ତି ତ?
"ସନ୍ମାର୍ଗେ ତାବ ଦାସ୍ତେ ପ୍ରଭବତି ପୁରୁଷ ସ୍ତାବଦେବେନ୍ଦ୍ରିୟାଣାଂ।
ଲଜ୍ଜାତାବଦ୍ଧିଧତ୍ତେ ବିନୟମପି ତଦାବ ଲମ୍ବତେ ତାବଦେବ
ଭ୍ରୁରୁପାକୃଷ୍ଟ ମୁକ୍ତା ଶ୍ରବଣ ପଥଗତା ନୀଲ ପକ୍ଷ୍ମଣ ଏତେ
ଯାବଲ୍ଲୀଲାବତୀନାଂ ନହୃଦ ଧୃତି ମଷୋ ଦୃଷ୍ଟି ବାଣା ପତନ୍ତିଃ।"
ଅର୍ଥାତ୍—ଯେତେଦିନ ଯାଏ ରସିକା ନାରୀର ନିଳୋତ୍ପଳ ନେତ୍ରର ମଧୁର ଦୃଷ୍ଟି ପୁରୁଷ ଉପରେ ପଡ଼ି ନଥାଏ ତେତେ ଦିନ ପର୍ଯ୍ୟନ୍ତ ସେ ତାର ଲଜ୍ଜା, ବିନୟାଦ ଗୁଣ ଗୁଡ଼ିକ ଧରି ରହିପାରେ। କିନ୍ତୁ ଲୀଳାବତୀ ନାରୀର ଦୃଷ୍ଟି ପଡ଼ିଲା ପରେ,

ନିଦ୍ରା । ଝୋଟିକାଇ ଟୋକା ତ ମତେ ଏକେଦମ୍ କରିଁ ନାହିଁ ଦେଇଛନ୍ତି । ଅନ୍ୟର କଥା କଣ କହିବି, ଆପଣ ସଂସାର କରନ୍ତୁ । ବୁଝିଲେ, ହଁ, ମୁଁ ଯାଉଛି, ଟେଣେ ଭାତ ବାଢ଼ି-ଦେଇ ବସିଥିବ, ନୋକେଇ ବୋଉ ମତେ ଭାରି ଭଲପାଏ ।

( ପ୍ରସ୍ଥାନ )

ଇନ୍ଦ୍ରନାଥ—ତୁଚ୍ଛାବାଣ୍ଠା ତ ଅନେକ ତଥ୍ୟ କଥା କହି ଚାଲି ଗଲା । ଜୀବନରେ ମୁଁ ଯଦି ସଂସାରୀ ହୁଏ, ଅମିତା ହେବ ମୋର ଜୀବନର ସଙ୍ଗିନୀ । ଅମିତା ବିଦୁଷୀ, ଅମିତା ରାଜନୀତି କୁଶଳା, ସେ ହେବ ମୋର ଭାବୁକ ହୃଦୟର ଭାବରସ ବାହିନୀ ମୃଦୁ ମନ୍ଦାକିନୀ ଧାରା । ନା, ନା, ଏସବୁ ସମ୍ଭବ ନୁହେଁ, ମୁଁ ଯେ କର୍ମୀ ! କର୍ମ ବନ୍ଧନରେ ମୋର ଗୋଟାକଯାକ ଦେହ ବନ୍ଧା ହୋଇ ରହିଛି । ସେଥିରୁ ମୁକ୍ତ ହୋଇ ଯିବା ଉପାୟ ତ ମୋର ନାହିଁ । ବର୍ତ୍ତମାନ ଦେଶର ଚତୁର୍ଦ୍ଦିଗରେ ଦିଶୁଛି ଭାବ ସଂଗ୍ରାମର ଭୀଷଣ ବିଭୀଷିକା । ତାର ପଛରେ ମୁଁ ହେବି ଧାବିତ । ଜୀବନର ଭୋଗ ଆକାଂକ୍ଷାକୁ ଦେବି ଜଳାଞ୍ଜଳି, କାମନା କରିବି ଶର ବିଚ୍ଛେଦ । ଅମିତା ଯଦି ମୋର ବନ୍ଧୁତ୍ୱ ଗ୍ରହଣ କରେ, ସେତିକିରେ ହିଁ ମୁଁ ହେବି ସୁଖୀ । ଜୀବନର ଅସୀମ ନିଃସଙ୍ଗତ୍ୱ ଭିତରେ ଅନୁଭବ କରିବି ବନ୍ଧୁତ୍ୱର ସ୍ପର୍ଶ ।

କଲ୍ୟାଣ—[ପ୍ରବେଶ କରି] ଅଜ୍ଞା ! ଆମ ଗାଁର ସମସ୍ତେ ଆପଣଙ୍କର ଉପବାସରେ ଉପବାସ କରିବାକୁ ବସିଛନ୍ତି ।

ଇନ୍ଦ୍ରନାଥ—ବୁଝିଲି କଲ୍ୟାଣ, ଏଇ ଉପବାସ କରି ମୋର ଅନୁତାପ ଆସିଛି । ମୁଁ ଭାବୁଛି ଉପବାସ କରି ହୁଏ ତ ମୁଁ ଭଲ କରି ନାହିଁ । ଲୋକଙ୍କୁ ବୁଝେଇ କହିବା ହିଁ ଥିଲା ମୋର କର୍ତ୍ତବ୍ୟ । ଉପବାସ କରି ଲୋକଙ୍କୁ ଧମକ ଦେଖାଉଛି ବୋଲି ମୋର

ଭସ୍ମ ହେଉଛନ୍ତି । କିନ୍ତୁ ଆରମ୍ଭ ଯେତେବେଳେ କରି ସାରିଛି, ତାର ଅବସାନ ପାଇଁ ଅପେକ୍ଷା କରିବାକୁ ହେବ, କଲ୍ୟାଣ ! ଭଗବାନଙ୍କର ଯଦି ଇଚ୍ଛାଥାଏ, ତୁମେମାନେ ସୁଫଳ ପାଇବ ! ଅନ୍ୟମାନେ ମୋ ପାଇଁ ଉପବାସ କରିବେ ଏ କଥା ମୁଁ କଳ୍ପନା କଲେ କଷ୍ଟ ଲାଗୁଛି । ସମସ୍ତଙ୍କୁ ବୁଝେଇ କହିବୁ, କେହି ଯେପରି ଉପବାସ ନ କରନ୍ତି ।

କଲ୍ୟାଣ—ଯାଉଛି ଲୋକଙ୍କୁ ବୁଝେଇ କହିବି । [ପ୍ରସ୍ଥାନ]

## ତୃତୀୟ ଦୃଶ୍ୟ

ସ୍ଥାନ—ବୀର ବାବୁଙ୍କର ସଜ୍ଜିତ ଘର ଅଗଣା

( ଆରତି ଓ ଶଙ୍କର )

ଶଙ୍କର—ମୋର ବଡ଼ ଦୁଃଖ ହେଉଛି ଯେ, ଯେଉଁ ଦଳଟାକୁ ଏତେ ଯତ୍ନରେ ମନପ୍ରାଣ ଦେଇ ଗଢ଼ିଥିଲେ, ସେ ଦଳଟା ଦିନ ଗୃହିଟା ଭିତରେ କୁଆଡ଼େ ଛିନ୍ନ ଭିନ୍ନ ହୋଇଗଲା ।

ଆରତି—ଭଗବାନଙ୍କର ବିଧିକୁ କିଏ ଅନ୍ୟଥା କରିବ—କିନ୍ତୁ ତୁ ଏତେ ଅଧୀର କାହିଁକି ହେଉଛୁ । ଅପୂର୍ବ ତ ଆମମାନଙ୍କୁ ସମ୍ପୂର୍ଣ୍ଣ ନିର୍ଭର ଜବାବ ଦେଇଛନ୍ତି ।

ଶଙ୍କର—ଭଗବାନଙ୍କର ନାମ ଏଠି ଉଚ୍ଚାରଣ କର ନାହିଁ ଆରତି । ଯେଉଁଦିନଠୁଁ ଦଳ ଗଢ଼ିଛେ, ସେଇଦିନଠୁଁ ଆମେ ସାଇଲେ ଭଗବାନଙ୍କୁ ଭୁଲି । ବର୍ତ୍ତମାନ କେଉଁ ମୁହଁ ନେଇ ଜନ ସମାଜ ନିକଟରେ ଠିଆ ହେବା ସେଇ କଥା ଭାବୁଛି ।

[ ନେପଥ୍ୟେ—ବାଦ୍ୟ, ଶଙ୍ଖ, ହୁଳହୁଳି ଶବ୍ଦ, ବୀରବାବୁ ଓ ବୀର, ଚନ୍ଦ୍ର, ଗୁରୁ, ରେବା ଆଦି କେତେ ଜଣ ବନ୍ଧୁବର୍ଗ ପ୍ରବେଶ, ସମସ୍ତଙ୍କର ଯଥାସ୍ଥାନ ଉପବେଶନ ]

ବୀର—ଆଜି ଏହି ପବିତ୍ର ବିଦାୟସଭାରେ ଆପଣମାନଙ୍କ ସମକ୍ଷରେ କହି ରଖୁଛି ଯେ, ମୁଁ ଦେଶର, ଜାତିର କଲ୍ୟାଣ କାମନାରେ ମୋର ଏକମାତ୍ର କନ୍ୟା ସହିତ ସକଳ ପ୍ରକାର ଧନ ସମ୍ପଦ ଶ୍ରୀମାନ୍ ଅପୂର୍ବଙ୍କୁ ସମ୍ପ୍ରଦାନ କରିଅଛି । ମୋର ପୂର୍ଣ୍ଣ ଆଶା ଯେ ମୋର ଧନକୁ ଆପଣାର ଧନ ବୋଲି ମନେ କରି ଜନ ସେବା କାର୍ଯ୍ୟରେ ବିନିଯୋଗ କରିବେ ।

ଚନ୍ଦ୍ର—ଆରେ ଆମର ସେ ଜନସେବାରୁ କିଅଁ ମିଳିବ, ନା ଧୂଆ ମିଳିବ ? ଶହ ଶହ ବର୍ଷଧରି, ଯୁଗେ ଯୁଗେ କେତେ ସଂସ୍କାରକ, କେତେ ଦେଶହିତୈଷୀ ବାହାରିଲେଣି, ଲୋକଙ୍କୁ କେତେ ବାଦଲେଇ ଦେଲେଣି କହିଲ ? ମୋର ଆଜି ବଡ଼ ଆନନ୍ଦ ହେଉଛି, ଅପୂର୍ବ ପରି ବୁଦ୍ଧିମାନ ପୁଅ ହାତରେ ଯେଉଁ ଦାନ ଦିଆଗଲା, ସେ ତାହା ରଖାଳରି ସୁଖରେ ସଂସାର କରି ପାରିବ । ଆମର ଚିରକାଳର ସନାତନ ଧର୍ମକୁ ଦୃଢ଼ରୁ ଦୃଢ଼ତର କରି ରଖିବ ।

ଶରଦା—ହଁ ହେ ପଣ୍ଡିତେ । ମାନ୍ୟଥିଲା ମିଳିଥାରେ ହାତ ଧରିଛନ୍ତି । କିମିତି ସୁଖରେ ସଂସାର କରିବେ ଆଶୀର୍ବାଦ ଦିଅ, ଆମର ସେ ହାଡ଼ ପାଣି ସଭାରୁ କି ଲାଭ ହେବ ।

ବଂଶୀ—ଆପଣ ତ କାହାକୁ ପାଞ୍ଚଟଙ୍କା ଏକାଠି କରି ଦେଇ ପାରୁ ନ ଥିଲେ, ଆଜି ସବୁ ସମ୍ପତ୍ତି ଚନ୍ଦ୍ରକଳାଙ୍କ ସହିତ ଅପୂର୍ବଙ୍କୁ ଦେଇ ଦେବା ଦେଖି ଆଶ୍ଚର୍ଯ୍ୟ ଲାଗୁଛି । ଯାହାହେଉ ଆପଣ ଆଜି ଯେଉଁ ଆଦର୍ଶ ଦେଖାଇଦେଇ ଅଛନ୍ତି, ଆମ ଦେଶର ସମସ୍ତେ ନ ହେଲେ ସୁଦ୍ଧା ଶହକେ ଦଶଜଣ ଯଦି ଏହି ନୀତି ଅବଲମ୍ବନ କରନ୍ତି, ତାହାହେଲେ ଦେଶର ବହୁ ଉପକାର ସାଧିତ ହୁଅନ୍ତା ।

ବୀର—ଆପଣମାନେ ଜାଣନ୍ତି, ମୁଁ ଅତ୍ୟନ୍ତ ଧନ ଲାଳସୀ, ତଥାପି ସମସ୍ତ ଯେତେବେଳେ ଆସିଲା, ମୁଁ ଆଜ ନୀରବ ହୋଇ ରହି ପାରିଲି ନାହିଁ । ଭାରତ ପରି ପରାଧୀନ ଦେଶରେ ଶିକ୍ଷା ବିହୀନ ଅନ୍ଧକାର ମଧ୍ୟ ରାଜ୍ୟରେ କମ୍ୟୁନିଷ୍ଟ ବାଦ ଶୋଭନୀୟ ନୁହେଁ । ଆପଣମାନେ ଚିନ୍ତା କଲେ ଜାଣି ପାରିବେ, କମ୍ୟୁନିଷ୍ଟ ନିଜକୁ ଦାୟିତ୍ୱ ଜ୍ଞାନ ହୀନ କରିଦିଏ, ସେଥିରେ କାହାର ପ୍ରତି କାହାରି ମମତା ଭକ୍ତି ରହିବା ଦେଖାଯାଏ ନାହିଁ । କେବଳ ଖାଇ ପିଇ ସୁଖରେ ବଞ୍ଚିବା ବ୍ୟବସ୍ଥା ମାତ୍ର ସେଥିରେ ରହିଛି । ଯାହାର ଯେତେ ଶକ୍ତି ତଦ୍ଦ୍ୱାରା ସେ ଧନ ଉପାର୍ଜନ କରେ, ଧନ ଉପାର୍ଜନ ଚିନ୍ତା ନୀତି ବା ଗର୍ହିତ ନୁହେଁ । ଜଣେ ଜଣେ ଉପାର୍ଜନ ଷମ ଦାନଶୀଳ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଦେଶରେ ବହୁବିଧ ଉନ୍ନତି ମୂଳକ ଅନୁଷ୍ଠାନ ପ୍ରତିଷ୍ଠା ହୋଇ ପରସ୍ପର ସାହାଯ୍ୟ ସହାନୁଭୂତିର ଘନିଷ୍ଠ ସମ୍ବନ୍ଧ ରହେ ।

ଶଙ୍କର—ଏ ସମସ୍ତ ଧନୀକ ମାନଙ୍କର ଅନ୍ତରର କଥା ମାତ୍ର, କିନ୍ତୁ ଭାରତର ଜନସାଧାରଣ ଗ୍ରହିଛନ୍ତି ନିର୍ବିବାଦରେ କମ୍ୟୁନିଜମ୍ ନୀତି ।

ବୀର—ଆମ ଦେଶର ଯୁବକ ଗ୍ରହୁଛନ୍ତି କମ୍ୟୁନିଜମ୍ ନୀତି, କିନ୍ତୁ ଆମ ଦେଶର ଅସଂଖ୍ୟ ଜନତା ଅନୁଭବ କରନ୍ତି ନାହାନ୍ତି ରାଜ୍ୟ କଣ, ରାଜା କିଏ, କମ୍ୟୁନିଜମ୍ କଣ, କଂଗ୍ରେସ କଣ । ପଡ଼ଶା ଘର ଗଛରେ ଫଳ ଗୋଟିଏ ଦେଖିଲେ ଲୋଭ ଦୃଷ୍ଟି ଦେଇ, କେହି ନ ଥିବା ସମୟରେ ନେଇ ଯିବାକୁ କୁଣ୍ଠିତ ହୁଅନ୍ତି ନାହାନ୍ତି । ଏ ହେଲା ମନୁଷ୍ୟ ପ୍ରକୃତି, ଅନ୍ତରଣ ଓ ମନୋଭାବ—ଜଣକୁ ଅଂଶୀଦାର ନ କରି ଅନ୍ୟ ଜଣେ ଉପଭୋଗ କରିବା ଆକାଂକ୍ଷା । ଯେତେ ଦିନଯାଏ ଦେଶର ଅର୍ଥନୈତିକ ସମସ୍ୟାର ସମାଧାନ ହୋଇ ନାହିଁ, ଯେତେ ଦିନଯାଏ ଦେଶରୁ

ମୂର୍ଖତା ଦୂର ହୋଇ ନାହିଁ, ଯେତେ ଦିନଯାଏ ସମାଜର କୁସଂସ୍କାର ଦୂର ହୋଇ ନାହିଁ, ତେତେ ଦିନଯାଏ କୌଣସି 'ବାଦ୍'ର କୌଣସି ମୂଲ୍ୟ ନାହିଁ । ଏଣୁ ମୁଁ ଆଜି ମୋର ଯାହା କିଛି ଅଛି ତାହା ଦାନ କରି ଦେଶର ଜନସାଧାରଣଙ୍କ ସେବା କରିବାକୁ ଅମୂର୍ତ୍ତଙ୍କୁ ଉପଦେଶ ଦେଉଛି ।

ଅମୂର୍ତ୍ତ—ଆଜି ମୁଁ ମୋର ସହକର୍ମୀମାନଙ୍କୁ କହିବାକୁ କୁଣ୍ଠିତ ନୁହେଁ, ଯେଉଁ ଧନର ଅଭାବରୁ ମୁଁ ସେବା କାର୍ଯ୍ୟରେ ଅଗ୍ରସର ହେବାକୁ ବାଧା ପାଉଥିଲି, ସେଇ ଧନର ସହାୟତାରେ ବର୍ତ୍ତମାନ ମୁଁ ମୋର ଦୁର୍ଦ୍ଦଶାଗ୍ରସ୍ତ ଦେଶବାସୀଙ୍କର କିଛିତ ପରିମାଣରେ ହେଲେ ଦୁଃଖ ଦୂର କରି ପାରିବି, ଏ ଆଶା ମୋର ମନରେ ରହିଛି, ସେଥିପାଇଁ ମୁଁ ଆଜି ଜଗତର ବ୍ୟଙ୍ଗ ଇଙ୍ଗିତକୁ ଭ୍ରୂକ୍ଷେପ ନ କରି ବାହାରି ପଡ଼ିଛି ପୁଞ୍ଜିବାଦୀ ହେବାକୁ । କିନ୍ତୁ ଆଜି ଏହି ଶୁଭ ମୁହୂର୍ତ୍ତରେ ମୋର ବନ୍ଧୁମାନଙ୍କୁ କହି ରଖୁଛି, ସେହିମାନେ ହିଁ ମୋତେ ସାହସ ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଉତ୍ସାହ ଦିଅନ୍ତୁ, ଉତ୍ତେଜନା ଦିଅନ୍ତୁ । ମୁଁ ଯେପରି ଧନୀ ହୋଇ, କୋଟିପତି ହୋଇ, ଶୋଷକ ହୋଇ, ଜୀବନରେ ଜମିଦାର ହୋଇ ନ ବସେ । ଯେପରି ଦେଶର ସେବାକରି ଜୀବନ ଚରିତାର୍ଥ କରେ ।

ଆରତି ଓ ପଙ୍କଜ—ଆମେ ସମସ୍ତେ ଆଶୀର୍ବାଦ କରୁଛୁ—ତୁମର ମନସ୍କାମନା ପୂର୍ଣ୍ଣ ହେଉ ।

ଚନ୍ଦ୍ର—ଆରେ ଏ ଗୁଣ୍ଡାଙ୍କ କିଏ ? ବୀରୁ ମହାପାତ୍ର ଇଂରେଜୀ ରୀତିରେ ବିବାହ କଲା ନା କିଏ ? ଚାଲ, ଚାଲ ଆମର ଏଠି ସ୍ଥାନ ନାହିଁ । ( ପ୍ରସ୍ଥାନ ଉଦ୍ୟତ )

ମିତ୍ର—ଆହା, ବୁଝିଲେ ନାହିଁ ଅଜ୍ଞ ! ଯୁଗ ପରିବର୍ତ୍ତନ ହେଉଛି, ଏ ଯୁଗରେ ଇମିତି ବଦାନ୍ୟ ଏଣିକି ଚଳିବ ।

ଚନ୍ଦ୍ର—ନା, ନା, କି ଗାନ୍ଧୀ ଯୁଗ ହେଲା । ଧର୍ମ କର୍ମ ସବୁ ଗଲା, ଆମର ଏଠି ସ୍ଥାନ ନାହିଁ । ( ପ୍ରସ୍ଥାନ )

( ଶରଧା ଲଳିତାର ହାତ ଧରି ପ୍ରସ୍ଥାନ, ଅନ୍ୟମାନଙ୍କର ପ୍ରସ୍ଥାନ, ନେପଥ୍ୟ ଶଙ୍ଖ, ହୁଳହୁଳି, ଗୀତ ନାଚ ଇତ୍ୟାଦି । )

## ଚତୁର୍ଥ ଦୃଶ୍ୟ

ସ୍ଥାନ—ମନ୍ଦିର, ଯୁଗଳ ମୂର୍ତ୍ତି ସମ୍ମୁଖରେ ସବୁ ପୂଜାରୀ ଗୀତ ଗୋବିନ୍ଦ ଗାଉଥିବା—ଶାସ୍ତ୍ରୀ ଇନ୍ଦ୍ରନାଥ ।

( ହରିଜନ ଗଣ, କର୍ମୀଗଣ ପ୍ରବେଶ )

( ଗୀତ )

କ୍ଷମା କର ହରି ଅଧମ ଜନଙ୍କୁ
ପଦତଳେ ଦିଅ ସ୍ଥାନ
ଜାଗ ହେ ଜନତା ଜାଗ୍ରତ ଦେବତା
ତୁଟିଯାଉ ବ୍ୟବଧାନ
ଯୁଗେ ଯୁଗେ ପରି ଅବତରି ତୁମେ,
ଦୁଷ୍ଟ ନିବାରିଲ ନିଜ ପରାକ୍ରମେ
ତୁମେ କି ହେ ସେହି ଅନ୍ତ ଅଦନାରି
ଭାରତରେ ଗାନ୍ଧୀ ନାମେ ?
ପତିତ ହୋଇଛୁ ନ କରିଣ ମାପ
ଏ କଳଙ୍କ ଚିହ୍ନ ହୃଦେ ହୁଏ ତାପ ।

କରିଅ ପରଶ    ତୁମର ସ୍ପରଶ
ଶୁଦ୍ଧ ହୋଅ ଥରେ ଏଜଣେ ।
ଜପ ତପ କରି ଲଭିଲ ସିଦ୍ଧି କି
ସେ ଧନ ଆମର ପ୍ରାପ୍ୟ ନ ହେବ କି ।
ଦୟାବନ୍ତ ନାମ    ବହିବ କାହିଁକି
ଦୟା ନ ଦେଖାଇ ଦୀନେ ।

ସମସ୍ତେ—ଭାଇମାନେ ! ଯାଅ, ଦେବତା ଦର୍ଶନ କରି ଆସ ।

ପୂଜାରୀ—'ବୋଲ ହରି ବୋଲ, ବୋଲ ହରି ବୋଲ ।'

ଇନ୍ଦ୍ରନାଥ—[ ଉଠି ବସି ] ଜୟ ଭାରତ ଜୟ ।

[ ଦର୍ଶକ ଗଣ ସାଷ୍ଟାଙ୍ଗ ହେବା ]

ପୂଜାରୀ— ( ଗୀତ )

ନିନ୍ଦସି ଯଜ୍ଞ ବିଧେ ରହହ ଶ୍ରୁତି ଜାତଂ
ସଦୟ ହୃଦୟ ଦର୍ଶିତ ପଶୁ ଘାତଂ
କେଶବ ଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ
ମ୍ଳେଚ୍ଛ ନିବହ ନିଧନେ କଳୟସି କରବାଳଂ
ଧୂମ କେତୁ ମିଜ କିମପି କରାଳଂ
କେଶବ ଧୃତ, କଳ୍କି ଶରୀର, ଜୟ ଜଗଦୀଶ ହରେ ।

ଇନ୍ଦ୍ରନାଥ—ଭାଇମାନେ, ଆଜି ମୋର ବିଶ୍ୱାସ ହେଉଛି ଏଇ ଧାତୁ ମୂର୍ତ୍ତି ଆଜି ଗୋଟାଯାକ ବିଶ୍ୱରେ ସାକାର ହୋଇ ବିରାଜମାନ କରିଛନ୍ତି । ଆଜି ଅନେକ ଦିନ ପରେ ସେଇ ନିରାକାରଙ୍କର ଇଚ୍ଛା ପୂର୍ଣ୍ଣ ହୋଇଛି । ବୋଲ ସମସ୍ତେ ସମସ୍ୱରରେ—'ଜୟ ଭାରତର ଜୟ ।'

# ପଞ୍ଚମ ଦୃଶ୍ୟ

## ସ୍ଥାନ—ମନ୍ଦିର ଦୁଆର

ଶରଧା— (ପ୍ରବେଶ) ବାର ବାର କହିଲି, ଆହେ ସେ ହାଡ଼ଗୁଡ଼ାକୁ ଦେଉଳକୁ ଆଣ ନାହିଁ ବୋଲି ଯେ, ମୋ କଥା ରଖିଲେ ନାହିଁ ତ ?

ଗୁରୁ—[ ପ୍ରବେଶ କରୁ କରୁ ] ନୋକେଇ ବୋଉ, କେତେବେଳେ ଏ ଆଡ଼େ ଆସିଲୁ ମାମୁଁ କହୁନାହିଁ, ଆମ ନୋକେଇ ବୋଉର ତୁଣ୍ଡଟା ଟିକଏ ଖର ସିନା, ହୃଦୟଟା ଠିକ୍ ଶତଦଳ ପଦ୍ମପରି ନିର୍ମଳ—ମୋ ଉପରେ ଏତେ ପ୍ରେମ ଯେ, ଦଣ୍ଡେ ନ ଦେଖିଲେ ବଣା ହୋଇ ଯାଉଛି ।

ଶରଧା—ହଁ ମ, ବୁଢାକୁ ହେଲଣି କେତେ ପ୍ରେମ ପ୍ରେମ ହେଉଛ । ଖାଲି ଏଇ କଥା କହିଲାବେଳକୁ ନୋକେଇ ବୋଉ, ନୋକେଇ ବୋଉ ହେଉଥାଅ । କାଲି ସକାଳୁ ପିଲାଟା ପଇତା ଖିଏ ପକେଇବ । ତମେ ଯେ ହାଡ଼ ପାଣକୁ ଛୁଇଁଲ ବୋଲି ଚନ୍ଦ୍ର ପଣ୍ଡିତେ କର୍ମ କରିବେ ନାହିଁ, କହୁଛନ୍ତି ।

ଗୁରୁ—ଆରେ ନୋକେଇ ବୋଉ, ତୋ ପୁଅ ପାଠ ପଢ଼ି କର୍ମ କରିବା ଶିଖୁ, ବ୍ରତ କର୍ମରୁ ତୋର କି ଲାଭ ହେବ ?

ଶରଧା—ଗୁଲିଲି, ତାଙ୍କ ଗୋଡ ହାତ ଧରି ବୁଝେଇ କହି ଆସିବ ।

ଗୁରୁ—ଆଲୋ, ଏ ନୋକେଇ ବୋଉ, ମୁଁ ଆଉ କାହାରି ଗୋଡ ହାତ ଧରି ପାରିବ ନାହିଁ, ବରଂ ତୁ ଗୋଟାଏ କାମ କର । ମୋ ଗୋଡ଼ ଦି'ଟା କାହିଁକି ବଡ଼ ଘୁଲା ବନ୍ଧ ହେଉଛି, ଗୁଲିଲା ଚପି ଦେବୁ ।

ଶରଧା—ତମେ ଗାଧୋଇ ଆସିଲେ ଯାଇ ଛୁଇଁବ ।

ଗୁରୁ—କଣ କହିଲୁ, ଅଷମସ୍ତହାରେ ଗାଡ଼୍ୟୋଇବ ? ଗୋଡ଼ ଧୂଳି ହୋଉଛି, ଜର ହେବ ଯେ, ହେଉ ତେବେ ଯାଉଛି ଗାଡ଼୍ୟୋଇ ।

[ ପ୍ରସ୍ଥାନ ]

ଶରଧା—ତମା ମାଲେ, ମୋର ତାଙ୍କୁ ଷେଡ଼ ମଦ ଜର ହେବ, ମୁଁ କଣ କରିବ । ନାହିଁ ହେ, ଅସ, ଅସ, ଆଉ ଗାଡ଼ୋଇବା ଦରକାର ନାହିଁ [ ଫେର ] ବଡ଼ ଅମାନିଆ ମଣିଷ ତ, ଜମାରୁ ଶୁଣିବେ ନାହିଁ । ହଇ ହେ, ଅସ ବୋଲି କହୁଚି ପରା !

ଗୁରୁ—[ ହସି ହସି ପ୍ରବେଶ ] ନୋକେଇ ବୋଉ, ମୁଁ କହୁ ନାହିଁ, ମୁଁ ପରୀକ୍ଷା କରି ରଖିଛି । ମୋ ପ୍ରତି ତୋର କେତେ ପ୍ରେମ ସବୁ ମୁଁ ଜାଣେ ।

ଶରଧା—ଚାଲ ଘରକୁ, ଗୋଡ଼ କଣ ହୋଉଛି ପରା !

[ଉଭୟେ ପ୍ରସ୍ଥାନ]

ଅମିତା—[ପ୍ରବେଶ] [ ଗୀତ ]

ଏକା ପଥର ଯେ ଯାତ୍ରୀ ଆମେ ଦୁଇଜଣ
ଏକଇ ନାଦରେ ଏକଇ ଷାଗରେ କରିବୁ ଆମ ପ୍ରୟାଣ ।
ବାରମାସ ତହିଁ ଯାଉଥିବ ବହି ସୁମଧୁର ସମୀରଣ,
ଧଞ୍ଜି ସକାଳରେ ବନ୍ଦନାଛଳରେ ପକ୍ଷୀ ଗାଉଥିବେ ଗାନ ।
ଗଗନରୁ ଶଶୀ ସୁଧାରାଶି ରାଶି କରୁଥିବେ ବରଷଣ,
ହୋଇଗଲେ ସ୍ୱର୍ଗ ହୋଇବ ସେମାଅ ହରଷି ଉଠିବ ପ୍ରାଣ ।

ଚନ୍ଦ୍ର—(ପ୍ରବେଶ)

ଅମିତା—ନମସ୍କାର ! ଅଜ୍ଞା ।

ଚନ୍ଦ୍ର—ଆହା ହା, ଲଜ୍ଜା ଲଜ୍ଜାନାହିଁ ! ନମସ୍କାର ଆଜ୍ଞା ! ଭଲ ବୁଦ୍ଧି କଲ୍ ତ ? ଏଁ ଛି ଛି, ଆରେ ଏଇଥିପାଇଁ ମନୁଠାରୁ ମହାଭାରତ ପର୍ଯ୍ୟନ୍ତ ସବୁ ଶାସ୍ତ୍ରରେ କହୁଛି, "ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ" !

ଅମିତା—ମୁଁ ତ କିଛି ଭୁଲ କରି ନାହିଁ ।

ଚନ୍ଦ୍ର—ଆହା ନା, ଭୁଲ କରି ନାହଁ । ଘର ଭଲ କରିଛୁ—ବୁଝେ ଆଉ କଣ ? ଭାଇ ବଚସାରେ ପ୍ରଚାର କରି ହାଡ଼ ଖାଣ—

ଅମିତା—ମୁଁ ତ କାହାର ବିପକ୍ଷରେ କୌଣସି କଥା କହି ନାହିଁ । ଅସ୍ପୃଶ୍ୟତା ହୋଉଛି ହିନ୍ଦୁ ଧର୍ମର କଳଙ୍କ, ଏ କଥା ତ ମହାତ୍ମା ପ୍ରଚାର କରୁଛନ୍ତି । ମୁଁ ତା କି ଭୁଲ କରିଛୁ !

ଚନ୍ଦ୍ର—ଆହା, କି କଥା କି ! ଆରେ ଏଇ କାରଣରୁ ଋଷିମାନେ ସ୍ତ୍ରୀ, ଶୂଦ୍ରଙ୍କର ବିଦ୍ୟା ଅଧ୍ୟୟନ ନିଷେଧ କରିଥିଲେ । ସ୍ତ୍ରୀଙ୍କୁ ଶିକ୍ଷା ଦେବାକୁ ଯେଉଁମାନେ ଇସ୍କୁଲ ଘର କରୁଛନ୍ତି ତାଙ୍କ ମୁହଁରେ ଚୂନ କଳା ବୋଳି ନିଆଁ ପାଉଁଶ ଢାଳି ଦିଅ । ଆଉ ତୁମମାନଙ୍କ ପରି ଯଥେଚ୍ଛାଚାରିଣୀମାନଙ୍କୁ ଭଗବାନ ଶୀଘ୍ର ଶୀଘ୍ର ଶମନ ସଦନକୁ ପଠେଇ ଦିଅନ୍ତୁ । [ପ୍ରସ୍ଥାନ]

ଅମିତା—[ଚିନ୍ତିତ ଭାବରେ ପଦଚାରଣ କରି] ସତେ କଣ ମୁଁ ଭୁଲ କରିଛୁ ? କଣ ଭୁଲ କଲି ? କାହାକୁ ପଚାରିବି—କିଏ କହିବ ମୁଁ ଭୁଲ କରିଛୁ କି ନାହିଁ, [ପ୍ରସ୍ଥାନ]—[ଫେରି] କର୍ମୀମାନେ କହୁଥିଲେ, ସେ ଆଜି ଚାଲିଯିବେ ବୋଲି, ସେଦିନ ମୁକ୍ତାଙ୍କ ସ୍ତ୍ରୀ କହୁଥିଲେ ସେ ନିତ. ଏତକବେଳେ ଏଠିକି ବୁଲି ଆସୁଛନ୍ତି ବୋଲି । କାହିଁ ଆଜି ତ ଆସିଲେ ନାହିଁ ।

ଇନ୍ଦ୍ରନାଥ—( ପ୍ରବେଶ ) ଆପଣ ତାହାହେଲେ ଠିକ୍ ଅଛି ଯାଇଛନ୍ତି । ଅଜି ମୁଁ ଚାଲି ଯାଉଛୁ, ସମୟେ ସମୟେ ଆପଣଙ୍କର କୁଶଳ ସମ୍ବାଦ ଜଣାଇବେ ।

ଅମିତା—ଉପବାସରେ ଦୁର୍ବଳ ହୋଇ ପଡ଼ିଛନ୍ତି । ଆଉ ଦୁଇ ଦିନ ଏଠି ରହୁନାହାନ୍ତି ? ଟିକିଏ ବିଶ୍ରାମ ନେଇଥିଲେ ଭଲ ହୋଇଥାନ୍ତା ।

ଇନ୍ଦ୍ରନାଥ—ବିଶ୍ରାମ ନେବାର ତ ଉପାୟ ନାହିଁ ଅମିତା ଦେବୀ ! ଚାକିରୀ କରୁଥିଲେ ଅବା ଛୁଟି ମାଗିଥାନ୍ତି । ଏ ଯେ ବିନା ବେତନରେ ଚାକିରୀ । ଏଥିରେ ଛୁଟି, ବିଶ୍ରାମ କିଛି ନାହିଁ ।

ଅମିତା—ଏଇ ବିରାମ ବିହୀନ କର୍ମମୟ ରାଜ୍ୟରେ କ'ଣ ଆନନ୍ଦ ନାହିଁ ବୋଲି ଭାବୁଛନ୍ତି ? ମୁଁ ତ ଭାବେ ଗଭୀର ଦୁଃଖରୁ ଯେଉଁ ଅନୁଭୂତି ଜାଗେ ତାହା ହିଁ ଦିଏ ଆନନ୍ଦ ।

ଇନ୍ଦ୍ରନାଥ—ଆଜି ଏଇ ବିଦାୟ ନେବାକୁ ଭାବିଲା ବେଳେ ମୋର ମନେ ପଡୁଛି ଠିକ୍ ଏ ସ୍ଥାନରେ ପ୍ରଥମ ଆସିବା ଦିନ ଦେଖିଥିଲି ଗୋଟିଏ ମନୋହର ସ୍ୱପ୍ନ—।

ଅମିତା—ଆପଣ ଯଦି ମତେ ସହକର୍ମିଣୀ କରି ନିଅନ୍ତେ—।

ଇନ୍ଦ୍ରନାଥ—ତୁମକୁ ମୋର ସେ ବନ୍ଧୁର ପଥର ପଦଚାରିଣୀ କରିବାକୁ ଚାହେଁ ନାହିଁ ଅମିତା ଦେବୀ !

ଅମିତା—ଆପଣଙ୍କୁ ମୁଁ ଯେଉଁପରି ଅଲୌକିକ ଭାବରେ କଳ୍ପନା କରିଛି ମୁଁ ଦେଖିବାକୁ ଚାହେଁ ଜୀବନ ବ୍ୟାପୀ ସେଇପରି ଅଲୌକିକ ଭାବରେ । ସଂସାରଭିତରେ, ସହଜ ଭାବରେ ଆପଣଙ୍କୁ ପାଇବାକୁ କଳ୍ପନା କରେ ନାହିଁ । ମୁଁ ଚାହେଁ ଆପଣଙ୍କୁ ଦୂରରୁ । ଆପଣଙ୍କ ପଦାଙ୍କ ଅନୁସରଣ କରି ହୁଏ ତ ଶେଷ ଜୀବନରେ ଦିନେ କେବେ ଆପଣଙ୍କର ଯୋଗ୍ୟ ସହକର୍ମିଣୀ ହୋଇ ପାରିବି, ଏ ଆଶା ଅଛି, ଆପଣ ଭୟ କରିବେ ନାହିଁ । ଆପଣଙ୍କୁ ମୁଁ ସଂସାରର କ୍ଷୁଦ୍ର କକ୍ଷ ଭିତରେ ଦେଖିବାକୁ ଚାହେଁ ନାହିଁ ।

ଇନ୍ଦ୍ରନାଥ—[ହସି] ଓହୋ ! ଆପଣ ମତେ ଏକବାରେ ମହାପୁରୁଷ କରି କଳ୍ପନା କରି ସାରିଲେଣି । କିନ୍ତୁ ଆପଣ ଭାବିବା ଉଚିତ ଯାହାକୁ ନର ଦେହ ଧାରୀ ଦେବତା ବୋଲି ଭାବିଛନ୍ତି ହୁଏ ତ

ତା'ଠି କିଛି ନାହିଁ । ଯେ ଭଲ ମନ୍ଦ, ଆଲୋକ ଅନ୍ଧାର; ସବଳତା ଓ ଦୁର୍ବଳତା ପଥ ଦେଇ ଗତି ହୋଇ ଆସିଛି । ଆପଣଙ୍କୁ ଅତି ପାଖରେ ପାଇ ପରେ ଯଦି କର୍ତ୍ତବ୍ୟରେ ତ୍ରୁଟି କରେ ?

ଅମିତା—ମୁଁ ସେ ସବୁ ଶୁଣିବାକୁ ଚାହେଁ ନାହିଁ ? ଆପଣଙ୍କୁ ଯେଉଁ ଭାବରେ କଳ୍ପନା କରିଛି ସେଇ ଭାବରେ ହିଁ ଚାହିଁଛି ପ୍ରତି କ୍ଷଣରେ । ମୁଁ ଚାହେଁ ଦୂରରୁ— ।

ଇନ୍ଦ୍ରନାଥ—(ହସି ପରିହାସ ଛଳନାରେ ) ନିକଟରେ ଯାଇ ଅନ୍ୟ କେହି ଯଦି ମନକୁ ଆୟତ୍ତ କରି ନିଏ ?

ଅମିତା—ସେ ଭୟ ମୋର ନାହିଁ, ମୁଁ ଜାଣେ ଆପଣ କାହାର ଆୟତ୍ତାଧୀନ ନୁହନ୍ତି ।

ଇନ୍ଦ୍ରନାଥ—[ହସି] ତୁମେ ତ ମତେ ଏକାନ୍ତ ନିର୍ଲିପ୍ତ କରି ଥୋଇ ଦେଲ । କିନ୍ତୁ ଏଇ ପ୍ରଶଂସାର୍ହ ମତେ ଲିପ୍ତ କରି ଥୋଇ ଦେବାକୁ ଆରମ୍ଭ କଲଣି । ବର୍ତ୍ତମାନ କରେ କଣ ?

ଅମିତା—(ପାଶ୍ୱ'କୁ ବୁଲି ଆସି ] ଆପଣଙ୍କୁ କି ଏକ ପୁଣ୍ୟମୁହୂର୍ତ୍ତ ସନ୍ଧ୍ୟାରେ ଦେଖି ପୂଜା ଦେଇଥିଲି ମନେ ମନେ । ଆଜି ଆପଣଙ୍କୁ ମୁଁ ମାଗୁଛି ଆଶୀର୍ବାଦ । ଆପଣଙ୍କ କର୍ମମୟ ରାଜ୍ୟର ଦ୍ୱାର ଦେଶରେ ପ୍ରତିବନ୍ଧକ ହୋଇ ଯେପରି କୌଣସି ସମୟରେ ଠିଆ ନ ହୁଏ, ସେଇ ଶକ୍ତି ଆପଣ ହିଁ ମତେ ଦିଅନ୍ତୁ ।

ଇନ୍ଦ୍ରନାଥ—[ହସି] ଅଚ୍ଛା, ତାହା ହିଁ ହେଉ - 'ଜୟ ଭାରତ ଜୟ' ଇତ୍ୟାଦି ।

[ନେପଥ୍ୟ ଗୀତ] ( ଇନ୍ଦ୍ରନାଥ, ଅମିତା କଲ୍ୟାଣ ଓ ଅନ୍ୟାନ୍ୟ କର୍ମୀଗଣ ସ୍ଲୋଗାନ ଓ ଗୀତ ଗାଇ ଗାଇ ପ୍ରସ୍ଥାନ )

—ପରଦା—

—ଶେଷ—

ମୁଦ୍ରାକର— ବନମାଳୀ ମିଶ୍ର, ନବଭାରତ ପ୍ରେସ, କଟକ ୧୯୪୬ ।

